ପ୍ରାଚୀ ଗ୍ରନ୍ଥମାଳା ତ୍ରୟସ୍ତ୍ରିଂଶ




# ସ୍ତୁତିନିଷେଧ ଗୀତା

ଭୀମଭୋଇ

# ମୁଖବନ୍ଧ

ଏହି ଗୀତାର ରଚୟିତା ଭୀମଭୋଇଙ୍କ ପରିଚୟ ସ୍ତୁତିଚିନ୍ତାମଣି ଓ ବ୍ରହ୍ମନିରୂପଣର ମୁଖବନ୍ଧମାନଙ୍କରେ ପ୍ରଦତ୍ତ ହୋଇଅଛି । ଏହି ଗ୍ରନ୍ଥର ବକ୍ତା ଅନାଦିବ୍ରହ୍ମ, ଅଲେଖ ପୁରୁଷ, ଅବଧୂତ ଗୋସ୍ୱାମୀ ଓ ଶ୍ରୋତା ଭକ୍ତ ଗୋବିନ୍ଦ । ଗ୍ରନ୍ଥର ନାମ ଶ୍ରୁତିନିଷେଧ । ଶ୍ରୁତିର ଅର୍ଥ ବେଦ-ବେଦାନ୍ତ, ଏଠାରେ ଶ୍ରୁତିର ଅର୍ଥ କର୍ମକାଣ୍ଡ, ଜ୍ଞାନ କାଣ୍ଡ ନୁହେଁ । କିନ୍ତୁ ଆର୍ଯ୍ୟ ଋଷିମାନେ ଶ୍ରୁତିକୁ ଦୁଇ ଅର୍ଥରେ ଗ୍ରହଣ କରି ଅଛନ୍ତି । "ଦ୍ୱେ ବିଦ୍ୟେ ବେଦିତବ୍ୟେ ପରା ଅପରା ଚ" । ଅପରା ବିଦ୍ୟା କର୍ମକାଣ୍ଡକୁ ପରିହାର କରି ଜ୍ଞାନ କାଣ୍ଡକୁ ଆଶ୍ରୟ କରିବା ଏହି ଗ୍ରନ୍ଥର ମର୍ମ । "ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋଭବାର୍ଜୁନ !" ଗୀତା ।

ପ୍ରକୃତି ପୁରୁଷ ନେଇ ଏ ସଂସାର । ପୁରୁଷ ପରଂବ୍ରହ୍ମ ସାକ୍ଷୀଭୂତ, କୂଟସ୍ଥ ଓ ଚୈତନ୍ୟମୟ । ସେ ସଚ୍ଚିଦାନନ୍ଦ । ଚିଦାନନ୍ଦମୟ ବ୍ରହ୍ମଙ୍କର ପ୍ରତିବିମ୍ବ ଯାହାଠାରେ ବିଦ୍ୟମାନ ତାହା ପ୍ରକୃତି । ସତ୍ତ୍ୱ ରଜ ଓ ତମ ଏହି ତିନିଗୁଣ ପ୍ରକୃତିର । ପ୍ରକୃତି ସ୍ଥୂଳତଃ ଦ୍ୱିବିଧ:— ମାୟା ଓ ଅବିଦ୍ୟା । ଶୁଦ୍ଧ ସତ୍ତ୍ୱଗୁଣ ମାୟା ଏବଂ ରଜ ଓ ତମ ଦ୍ୱାରା ମଳିନୀକୃତ ସତ୍ତ୍ୱଗୁଣ ତାହା ଅବିଦ୍ୟା ।

ମାୟା ପ୍ରତିବିମ୍ବିତ ଚିଦାନନ୍ଦବ୍ରହ୍ମ ଈଶ୍ୱର । ମାୟା ଈଶ୍ୱରଙ୍କର ବଶବର୍ତ୍ତିନୀ ହେତୁ ସେ ସର୍ବଜ୍ଞ ଓ ଐଶ୍ୱର୍ଯ୍ୟଶାଳୀ । "ମାୟାନ୍ତୁ ପ୍ରକୃତିଂ ବିଦ୍ୟାନ୍ମାୟିନଂ ତୁ ମହେଶ୍ୱରମ୍" ପ୍ରକୃତିକୁ ମାୟା ଏବଂ ଈଶ୍ୱରଙ୍କୁ ମାୟା ବିଶିଷ୍ଟ ପୁରୁଷ ବୋଲି ଜାଣିବ । ଏଠାରେ ମାୟାକୁ ଉପାଦାନ କାରଣ ଓ ଈଶ୍ୱର, ମାୟୀ ମାୟୋପାଧିକ ଅନ୍ତର୍ଯ୍ୟାମୀ ମହେଶ୍ୱର ମାୟାଧିଷ୍ଠାତାଙ୍କୁ ନିମିତ୍ତ କାରଣ ରୂପେ ଜାଣିବ ।

ପୁନଶ୍ଚ :—

"ମାୟୀ ସୃଜତି ବିଶ୍ୱଂ ସନ୍ନିରୁଦ୍ଧସ୍ତତ୍ର ମାୟୟା
ଅନ୍ୟ ଇତ୍ୟପରା ବ୍ରୂତେ ଶ୍ରୁତିସ୍ତେନେଶ୍ୱରେ ସୃଜେତ୍ ।
ପଞ୍ଚଦଶୀ ।

ମାୟାବୀ ଈଶ୍ୱର ନିଜ ମାୟାରେ ଅବଦ୍ଧ ହୋଇ ବିଶ୍ୱ-ବ୍ରହ୍ମାଣ୍ଡ ସୃଷ୍ଟି କରନ୍ତି ସେ ପରଂବ୍ରହ୍ମଠାରୁ ଭିନ୍ନ; ଏହା ଶ୍ରୁତିମାନଙ୍କରେ କଥିତ । ଈଶ୍ୱରହିଁ ସୃଷ୍ଟି କରନ୍ତି ।

ପୁନଶ୍ଚ :—

"ଆନନ୍ଦମୟବିଜ୍ଞାନମୟାବୀଶ୍ୱରଜୀବକୌ
ମାୟୟା କଳ୍ପିତାବେତୌ ତାଭ୍ୟାଂ ସର୍ବଂ ପ୍ରକଳ୍ପିତମ୍ ।
ପଞ୍ଚଦଶୀ ।

ଆନନ୍ଦମୟ ସ୍ୱରୂପ ଈଶ୍ୱର ଏବଂ ବିଜ୍ଞାନରୂପ ଜୀବ ଉଭୟେ ମାୟାଦ୍ୱାରା କଳ୍ପିତ ଏବଂ ସେହି ଉଭୟଙ୍କଠାରୁ ଏହି ବିଶ୍ୱ ସୃଷ୍ଟି ହୋଇଅଛି ।

ପୁନଶ୍ଚ :—

ଦୈବୀ ହ୍ୟେଷାଗୁଣମୟୀ ମମମାୟା ଦୁରତ୍ୟୟା
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ।

ଗୀତା ୭—୧୪

ଏହି ମାୟା ମୋର ଶକ୍ତି । ଯେଉଁମାନେ ମୋତେ ପ୍ରାପ୍ତ ହୁଅନ୍ତି ସେମାନେ ଏ ମାୟା ସମୁଦ୍ର ପାର ହୁଅନ୍ତି ।

ପୁନଶ୍ଚ :—

ଯୋ ମାଂ ସର୍ବେଷୁ ଭୂତେଷୁ ସନ୍ତମାତ୍ମାନମୀଶ୍ୱରମ୍ ।
ହିତ୍ୱାର୍ଚ୍ଚାଂ ଭଜତେ ମୌଢ୍ୟାଦ୍ଭସ୍ମନ୍ୟେବ ଜୁହୋତି ସଃ ॥

ଭା. ୯—୨୯—୨୨

ଯେ ବ୍ୟକ୍ତି ମୂଢ଼ଭାବଶତଃ ମୋତେ ତ୍ୟାଗ କରି ପ୍ରତିମା ଅର୍ଚ୍ଚନା କରେ ତାହାର କେବଳ ଭସ୍ମରେ ଅହୁତି ଦେବା ହୁଏ ଇତ୍ୟାଦି ଇତ୍ୟାଦି ।

ପୁନଶ୍ଚ—ଦ୍ୱାରକା ଦାସ ପରଚେ ଗୀତାର ୧୦ମ ଅଧ୍ୟାୟରେ ଲେଖିଅଛନ୍ତି ।

ମୋତେ ଛଡ଼ି ଆନ ଦର୍ପ ପୂଜନ୍ତି
ମୁଁ ଅଛି ବୋଲିଣ ସେ ନ ଚିହ୍ନନ୍ତି ।
ତାଙ୍କୁ ଚନ୍ଦ୍ରପଣ୍ଟ ଟିକା ଥାଉତେ
ପ୍ରତିମା କରି ପୂଜନ୍ତି ସ୍ୱଟେରେ ।
ସ୍ୱଭବେ ଅଜୀବ ଛବ ମୋହିତ
ପାତରେ ନ ନେଇ ମାଗି ନ ଖାଇ ।
କର୍ଣ୍ଣେ ନ ଶୁଣେ କହିବା ବଚନ
ଭୂହାସ କଲେ ନ କରେ କଲ୍ୟାଣ ।

।

ଏମନ୍ତ ପ୍ରତିମା ଥାପନା କରି
ପୂଜଇ ଏହି ଦର୍ପଁ ବୋଲି କରି ।
ଏମନ୍ତ ବୋଲି ଦୁର୍ବୁଦ୍ଧି ପାମରେ
ମୋତେ ନ ଚିହ୍ନନ୍ତି ମାୟା ମୋହରେ ।।
ଇତ୍ୟାଦି ଇତ୍ୟାଦି ।

ତହୁଁ ପରମାତ୍ମାଙ୍କ ଭୀମଭୋଇ ଏହି ଗ୍ରନ୍ଥରେ—ନିରାକାର—ମହାବିଷ୍ଣୁ, ବ୍ରହ୍ମା ଓ ଶିବ ମୂର୍ତ୍ତି ପରିହାର କରି ସ୍ୱ ଘଟସ୍ଥିତ ଚକ୍ରମାନଙ୍କରେ ବ୍ରହ୍ମା, ବିଷ୍ଣୁ, ଶିବ ( ନାଭି, ହୃଦ, କଣ୍ଠର ଦେବତା ) ନିରୂପଣ କରି ଅଛନ୍ତି ।

ଦେବୀମାନେ କାମିନୀରୂପେ ନରଙ୍କୁ ଗ୍ରାସ କରିବା ନିମିତ୍ତ ମର୍ତ୍ତ୍ୟରେ ବ୍ୟାପି ଅଛନ୍ତି । କାମିନୀଙ୍କ ଠାରେ ନର ଆସକ୍ତ ନ ହୋଇ ସୁ ଜୀବଙ୍କୁ ପରମରେ ପ୍ରୀତିର ପାଶ କରାଇବା ରୂପ ବିଷୟ ପ୍ରତିପାଦିତ ହୋଇଅଛି । ଗ୍ରହ ନକ୍ଷତ୍ରଙ୍କ ନିଷ୍କାମ ଭଜନ ନ ହେତୁ ସେମାନେ ମଧ୍ୟ ଉପାସ୍ୟ ନୁହନ୍ତି । ପରମାତ୍ମାଙ୍କ ତେଜରେ ଜଗତ ତେଜୀୟାନ ଏହା କଥିତ ହୋଇଅଛି । ତୁଳସୀ ବୃକ୍ଷର ବୃତ୍ତାନ୍ତ କଥିତ ହୋଇ ତାହାର ରୂପ ପୂଜା ନିଷିଦ୍ଧ ହୋଇଅଛି ଓ ଜ୍ଞାନମାର୍ଗରେ ତାହା ଓଲଟ ବୃକ୍ଷ ରୂପେ ଗୃହୀତ ହୋଇଅଛି । ତୁଳସୀ ବୃକ୍ଷରୂପୀ ଶରୀର ତତ୍ତ୍ୱ ବୁଝିବାକୁ ଉପଦେଶ ଦିଆ ହୋଇଅଛି । ତୁଳସୀମାଳାକୁ ପରିହାର କରି କଣ୍ଠ ଘଣ୍ଟିକାରୂପ ମାଳରେ ନାମ ଉଚ୍ଚାରଣ କରିବା ବିଧେୟ । ବିଷ୍ଣୁ ନିର୍ମାଲ୍ୟ ତ୍ୟାଗ କରି ନାମ ନିର୍ମାଲ୍ୟ ଜପିବା ଦଶମୀ ପାଳିବାକୁ ଦଶାଙ୍ଗ ଯୋଗରେ ପରିଣତ କରିବା ଓ ଏକାଦଶୀକୁ ଏକାକ୍ଷର ରୂପେ

ଗ୍ରହଣ କରିବା ନିମିତ୍ତ ଉପଦେଶ ପ୍ରଦତ୍ତ ହୋଇଅଛି । ବାହାର ଦେବତା ଉପାସନା ଛାଡ଼ି ଭିତର ଦେବତା ଉପାସନା କରିବାର ବିଷୟ ଏହି ଗ୍ରନ୍ଥରେ ପ୍ରତିପାଦିତ ହୋଇଅଛି ।

ଏହି ଗ୍ରନ୍ଥରେ ଭୀମ ଅଲେଖ ବ୍ରହ୍ମଙ୍କ ଉପାସନାର ବିଷୟ ପ୍ରତିପାଦିତ କରିବା ଛଳରେ ବାହ୍ୟ କର୍ମ କର୍ମିଣି ଜନିତ ଉପାସନା ପଦ୍ଧତିକୁ ନିଷେଧ କରିଅଛନ୍ତି । ଭୀମ ଯେ ନୂତନ ଗୋଟିଏ ବିଷୟ ପ୍ରତିପାଦିତ କରି ଅଛନ୍ତି ଏମନ୍ତ ନୁହେଁ, ଚୈତନ୍ୟ ଦାସଙ୍କ ନିର୍ଗୁଣମାହାତ୍ମ୍ୟ ଓ ହାଡ଼ିଦାସଙ୍କ ପରଚେ ଗୀତା ପ୍ରଭୃତି ପାଠ କଲେ ଏ ବିଷୟ ମଧ୍ୟ ପ୍ରତିପନ୍ନ ହୁଏ । ଭୀମ ଉକ୍ତ ବିଷୟକୁ ନିଜର ଓଜସ୍ୱିନୀ ଭାଷାରେ ଦୃଢ଼ ଭାବରେ ପ୍ରତିପାଦିତ କରି ଅଛନ୍ତି ଯାହା ସେ କହି ଅଛନ୍ତି :—

"ବାହ୍ୟ ମଠର କର୍ମ ଦେହି
କେବେହେଁ କିଛି ଫଳ ନାହିଁ ।"

ଇତ୍ୟାଦି ଇତ୍ୟାଦି ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ.

।

ଏମନ୍ତ ପ୍ରତିମା ଥାପନା କରି
ପୂଜଇ ଏହି ଦର୍ପ ବୋଲି କରି ।
ଏମନ୍ତ ବୋଲି ଦୁର୍ବୁଦ୍ଧି ପାମରେ
ମୋତେ ନ ଚିହ୍ନନ୍ତି ମାୟା ମୋହରେ ।।
ଇତ୍ୟାଦି ଇତ୍ୟାଦି ।

ତହୁଁ ପରମାତ୍ମଙ୍କ ଆଦେଶହୋଇ ଏହି ଗ୍ରନ୍ଥରେ—ନିରାକାର—ମହାବିଷ୍ଣୁ, ବ୍ରହ୍ମା ଓ ଶିବ ମୂର୍ତ୍ତି ପରିହାର କରି ସ୍ୱ ଘଟସ୍ଥିତ ଚକ୍ରମାନଙ୍କରେ ବ୍ରହ୍ମା, ବିଷ୍ଣୁ, ଶିବ ( ନାଭି, ହୃଦ, କଣ୍ଠର ଦେବତା ) ନିରୂପଣ କରି ଅଛନ୍ତି ।

ଦେବୀମାନେ କାମିନୀରୂପେ ନରଙ୍କୁ ଗ୍ରାସ କରିବା ନିମିତ୍ତ ମର୍ତ୍ତ୍ୟରେ ବ୍ୟାପି ଅଛନ୍ତି । କାମିନୀଙ୍କ ଠାରେ ନର ଆସକ୍ତ ନ ହୋଇ ସ୍ୱ ଜୀବକୁ ପରମରେ ପ୍ରୀତିର ପାଶ କରାଇବା ରୂପ ବିଷୟ ପ୍ରତିପାଦିତ ହୋଇଅଛି । ଗ୍ରହ ନକ୍ଷତ୍ରଙ୍କ ନିଷ୍କାମ ଭଜନ ନ ହେତୁ ସେମାନେ ମଧ୍ୟ ଉପାସ୍ୟ ନୁହନ୍ତି । ପରମାତ୍ମାଙ୍କ ତେଜରେ ଜଗତ ତେଜୀୟାନ ଏହା କଥିତ ହୋଇଅଛି । ତୁଳସୀ ବୃକ୍ଷର ବୃତ୍ତାନ୍ତ କଥିତ ହୋଇ ତାହାର ରୂପ ପୂଜା ନିଷିଦ୍ଧ ହୋଇଅଛି ଓ ଜ୍ଞାନମାର୍ଗରେ ତାହା ଓଲଟ ବୃକ୍ଷ ରୂପେ ଗୃହୀତ ହୋଇଅଛି । ତୁଳସୀ ବୃକ୍ଷରୂପୀ ଶରୀର ତତ୍ତ୍ୱ ବୁଝିବାକୁ ଉପଦେଶ ଦିଆ ହୋଇଅଛି । ତୁଳସୀମାଳକୁ ପରିହାର କରି କଣ୍ଠ ଘଣ୍ଟିକାରୂପ ମାଳରେ ନାମ ଉଚ୍ଚାରଣ କରିବା ବିଧେୟ । ବିଷ୍ଣୁ ନିର୍ମାଲ୍ୟ ତ୍ୟାଗ କରି ନାମ ନିର୍ମାଲ୍ୟ ଜପିବା ଦଶମୀ ପାଳନାକୁ ଦଶାଙ୍ଗ ଯୋଗରେ ପରିଣତ କରିବା ଓ ଏକାଦଶୀକୁ ଏକାକ୍ଷର ରୂପେ

ଗ୍ରହଣ କରିବା ନିମିତ୍ତ ଉପଦେଶ ପ୍ରଦତ୍ତ ହୋଇଅଛି । ବାହାର ଦେବତା ଉପାସନା ଛାଡ଼ି ଭିତର ଦେବତା ଉପାସନା କରିବାର ବିଷୟ ଏହି ଗ୍ରନ୍ଥରେ ପ୍ରତିପାଦିତ ହୋଇଅଛି ।

ଏହି ଗ୍ରନ୍ଥରେ ସ୍ୱାମୀ ଅଲେଖ ବ୍ରହ୍ମଙ୍କ ଉପାସନାର ବିଷୟ ପ୍ରତିପାଦିତ କରିବା ଛଳରେ ବାହ୍ୟ କର୍ମ କର୍ମୀଙ୍କ ଜନିତ ଉପାସନା ପଦ୍ଧତିକୁ ନିଷେଧ କରିଅଛନ୍ତି । ସ୍ୱାମୀ ଯେ ନୂତନ ଗୋଟିଏ ବିଷୟ ପ୍ରତିପାଦିତ କରି ଅଛନ୍ତି ଏମନ୍ତ ନୁହେଁ, ଚୈତନ୍ୟ ଦାସଙ୍କ ନିର୍ଗୁଣମାହାତ୍ମ୍ୟ ଓ ଦ୍ୱାରକାଦାସଙ୍କ ପରଚେ ଗୀତା ପ୍ରଭୃତି ପାଠ କଲେ ଏ ବିଷୟ ମଧ୍ୟ ପ୍ରତିପନ୍ନ ହୁଏ । ସ୍ୱାମୀ ଉକ୍ତ ବିଷୟକୁ ନିଜର ଓଜସ୍ୱିନୀ ଭାଷାରେ ଦୃଢ଼ ଭାବରେ ପ୍ରତିପାଦିତ କରି ଅଛନ୍ତି ଯଥା ସେ କହି ଅଛନ୍ତି :—

"ବାହ୍ୟ ମତର କର୍ମ ଯେହି
କଲେହେଁ କିଛି ଫଳ ନାହିଁ ।"

ଇତ୍ୟାଦି ଇତ୍ୟାଦି ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ.

# ଶ୍ରୁତିନିଷେଧ ଗୀତା

## ପ୍ରଥମ ଅଧ୍ୟାୟ

ଜୟ ତୁ ମହାଶୂନ୍ୟ ବ୍ରହ୍ମ ।
ନିଷ୍କାମ ନିର୍ମୋହ ନିର୍ଗୁଣ ॥
ଜୟ ଅନାଦି ଯୋଗେଶ୍ୱର ।
ଅନନ୍ତ ମହିମା ସାଗର ॥
ଅଲେଖ ନାମ ଅବଧୂତ ।
ଏ ଘୋର ଯୁଗରେ ଗୁପତ ॥
ମୁନିଜନଙ୍କ ଅଗୋଚର ।
ଅବର ବିଷ୍ଣୁ ବ୍ରହ୍ମା ହର ॥
ସେହି ନ ପାଇ ତଥ୍ୟ କରି ।
ଚଉଦ ବ୍ରହ୍ମାଣ୍ଡ ପ୍ରଚାରି । ୫ ।
ଅଶେଷ ଭୁବନ କରତା ।
ସକଳ ଜୀବ ପିତା ମାତା ॥
ତାହାଙ୍କ ବର୍ଣ୍ଣ ଚିହ୍ନ ନାହିଁ ।
ଅରୂପାନନ୍ଦ ସେ ବୋଲାଇ ॥
ତାହାଙ୍କ ଅନ୍ତର୍ଯ୍ୟାମୀ ନାମ ।
ଅନ୍ତରୁ ଜାଣେ ସର୍ବ ଧର୍ମ ॥
ଭଗତ ଭାବକୁ ନିକଟ ।
ଫେଡ଼ନ୍ତି ବିପତ୍ତି ସଙ୍କଟ ॥
ଏ କଳିଯୁଗେ ଉତପନ୍ନ ।
ସେ ପ୍ରଭୁ ବୃଦ୍ଧ ନାରାୟଣ ।୧୦।
ବ୍ରହ୍ମାଣ୍ଡ ରଖିବା ନିମନ୍ତେ ।
ଆପେ ବିଜୟେ କଲେ ମର୍ତ୍ତ୍ୟେ ॥
କଳି ଭାଙ୍ଗିବ ହେବ ସତ୍ୟ ।
କରିବେ ଗୁରୁ ଅବଧୂତ ॥
ମେଲଚ୍ଛ ସଂହାରିବା ପାଇଁ ।
ଗୁପତ ଭଙ୍ଗୀ ଲୀଳା ବହି ॥
ସୁଜନେ ସାବଧାନେ ଶୁଣ ।
ବିଜେ ଅନାଦି ନାରାୟଣ ॥
ଶ୍ରୁତିନିଷେଧ ଗୀତା ପଦ ।
ଅନାଦି ଗୋବିନ୍ଦ ସମ୍ବାଦ ।୧୫।
ସେ ଗୁରୁ ଶିଷ୍ୟ ପାଦତଳେ ।
ମୁଁ ଯେ ବୁଡ଼ିଲି ସୁଖଭେଳେ ॥

ସେ ଗୁରୁ ଶିଷ୍ୟ ପାଦତଳେ ।
ମୋ ଚିତ୍ତ ରହୁ ସର୍ବକାଳେ ॥
ସେ ଗୁରୁ ଶିଷ୍ୟ ଏକସ୍ଥାନେ ।
ଶ୍ରୁତି ନିଷେଧ ଗୀତା ଧ୍ୟାନେ ॥
ବସିଲେ ଏକ ଆସନରେ ।
ଜଗତ ଭାବ ତା ମନରେ ॥
ଅଭ୍ୟ ମଣ୍ଡଳରେ ଚିତ୍ତ ।
ଅରମ୍ଭେ ଭ୍ରମ ଅରହିତ ।୨୦।

ଗୋବିନ୍ଦ ଉବାଚ ।

ଗୋବିନ୍ଦ ଶିରେ କରଯୋଡ଼ି
ଶ୍ରୀଗୁରୁ ପାଦତଳେ ପଡ଼ି ॥
ହେ ଗୁରୁ ବ୍ରହ୍ମାଣ୍ଡ କରତା ।
ମନେ ପଡ଼ିଲା ଅସି କଥା ॥
ସେ ନିରାକାର ଆଦିବ୍ରହ୍ମ ।
ତାହାଙ୍କ ଯୋଗୁଁ ସିନା କର୍ମ ॥
ଏକୋଇଶ ବ୍ରହ୍ମାଣ୍ଡ ସମର୍ପି ।
ଠୂଳ ଶୂନ୍ୟରେ ଦେଲ ସ୍ଥାପି ॥
ସେ ଯେବେ ଭୁମ୍ଭ ସ୍ତୁତି ହେଲା ।
ଏ ଧର୍ମେ କ୍ଷପାଁ କାଟଗଲା ।୨୫।
ଆଦି ଅନନ୍ତ ନାମ ତାର ।
କି ଦ୍ରୋହ କଲ ସେ ତୁମର ॥

ଠୂଳ ଶୂନ୍ୟରେ ଜ୍ଞାନ ନାହିଁ ।
ଶ୍ରୀମୁଖେ କହିଲ ଗୋସାଇଁ ॥
ସେ ନିରାକାର ଜ୍ୟୋତି ବ୍ରହ୍ମ ।
ତାଙ୍କର ଯୋଗୁଁ ସିନା କର୍ମ ॥
ଏକୋଇଶ ବ୍ରହ୍ମାଣ୍ଡର ପତି ।
ତାହାଙ୍କୁ ସର୍ବେ ମାନୁଛନ୍ତି ॥
ଏ କଥା ବହୁତ ସଂଶୟ ।
ହେ ସ୍ୱାମି ଫେଡ଼ି ମୋତେ କହ
ଠୂଳଶୂନ୍ୟଟି ଅଟେ ଆଦ୍ୟ ।
ପଣ୍ଡିତେ କରନ୍ତି ସମ୍ବାଦ ॥
ପୂର୍ଣ୍ଣାଦି ବ୍ରହ୍ମ ବୋଲି କହି ।
ସଂସାର ଅଥରେ କରଇ ॥
ହେ ପ୍ରଭୁ ଅରୂପ ଅଦେହ ।
ସଂଶୟ ଫେଡ଼ି ମୋତେ କହ ॥

ଅନାଦିବ୍ରହ୍ମ ଉବାଚ ।

ଶୁଣ ଗୋବିନ୍ଦ ଶୁଦ୍ଧଚେତା ।
ସେ ନିରାକାର ଗୁଢ଼ କଥା ॥
ସତ୍ୟ ତ୍ରେତୟା ଯେ ଦ୍ୱାପର ।
ସ୍ୱଭାବେ ଏକରୂପ ତାର ।୩୫।
ଜ୍ୟୋତି ପୁରୁଷ ବୋଲାଇଲା ।
ଅରୂପେ ଲକ୍ଷ୍ୟହିଁ ନୋହିଲା ॥

ରଚନା ରୂପ ତାକୁ କହି ।
ବରଣେ ଲକ୍ଷ୍ୟ ନୁହେ ସେହି ॥
ମୁନି ଏ ରୂପେ ମାନିଅଛୁ ।
ପ୍ରକୃତି କଳ୍ପଣା ଲାଗିଛୁ ॥
ସେ ନିରାକାର ବ୍ରହ୍ମ ହର ।
ଅଙ୍ଗେ ପୁରୁଷ ଅଙ୍ଗେ ସ୍ତ୍ରିରି ॥
ଡାହାଣ ଅଙ୍ଗ ସ୍ତ୍ରିରିରୂପ ।
ବାମରେ ପୁରୁଷ ସ୍ୱରୂପ ।
ସେଠାରୁ କଳ୍ପଣା ଫେରୁଛି ।
ନାଦରୁ ବିନ୍ଦୁ ଜନମୁଛି ॥
ସେ ଅଟେ କଳ୍ପଣା ଭୁବନ ।
ନୁହଇ ସଦବ୍ରହ୍ମଜ୍ଞାନ ॥
ଜ୍ୟୋତି ପୁରୁଷ ନିରାକାର ।
ଏକୋଶ ବ୍ରହ୍ମାଣ୍ଡ ଭିତର ॥
ବଉଦେ ଏକ ତାର କାୟା ।
ତାଙ୍କୁ ଲାଗିଛୁ ମୋହମାୟା ॥
ପ୍ରକୃତି ଛନ୍ଦ ମାଳ ମାଳ ।
ଆଦି ସଂସାରେ ମୋହ ଜାଲ ॥
ସେ ରୂପ ବସ୍ତୁ ଯୋନି କହି ।
ତହିଁ ଜନ୍ମିଲେ ମୁକ୍ତି ନାହିଁ ॥
ବସ୍ତୁ ଯୋନିରେ ବସ୍ତୁମାୟା ।
ରୂଢ଼ାଇ ରଖିଅଛି କାୟା ॥

ତାହାଙ୍କୁ ଆଦିଶକ୍ତି କହି ।
ଅନନ୍ତଗର୍ଭ ସେ ବୋଲାଇ ॥
ଏକୋଶ ବ୍ରହ୍ମାଣ୍ଡରେ ଜାଣ ।
ଲାଗିଛି ଜନ୍ମ ମୃତ୍ୟୁମାନ ॥
ତହିଁ ଆଗକୁ ନାହିଁ କିଛି ।
ଅଭୟ ବ୍ରହ୍ମ ପୂରିଅଛି ।
ବ୍ରହ୍ମ ପୁନାଦି ଯେତେ ମାନେ ।
ମନ ନିବେଶି ମହାଶୂନ୍ୟେ ॥
ଅରୂପ ବ୍ରହ୍ମେ ତାଙ୍କ ଚିତ୍ତ ।
ଭକ୍ତେ ଅଲେଖ ଅବଧୂତ ॥
ପୂର୍ଣ୍ଣାନନ୍ଦଟି ପୂର୍ଣ୍ଣ ବ୍ରହ୍ମ ।
ନିଷ୍କାମ ନିର୍ମୋହ ସେ ଧର୍ମ ॥
ଏ ଜୀବ ରୂପରେ ପଶିଚି ।
ଅରୂପ ଅଂଶେ କଲେ ତରୁ ॥
ଶରୀର ବନ୍ଧେ ଯେତେ ଜୀବ ।
ରୂପକୁ କପାଇଁ ଭଜିବ ।
ରୂପ ବର୍ଣ୍ଣରେ ଆସିଅଛି ।
ଅରୂପ ନ ପାରଇ ବାଛି ॥
ତେଣୁ ସେ ଜୀବଟି ଅଜ୍ଞାନ ।
ରୂପରେ ବ୍ରହ୍ମ ନାହିଁ ପୂର୍ଣ୍ଣ ॥
ବ୍ରହ୍ମ ଯୋନିରେ ଯେହୁ ଜନ୍ମ ।
ସେହୁ କରନ୍ତି ବ୍ରହ୍ମକର୍ମ ॥

ଯେ ବସ୍ତୁ ଯୋନ ଜନ୍ମ ହୋଇ
ବ୍ରହ୍ମକୁ ଭଜନ ହୁଅଇ ।।
ଅଲେଖ ବ୍ରହ୍ମ ଯୋଗେଶ୍ୱର ।
କାର ବକାର ନାହିଁ ତାର ॥
ସଦା ସମ୍ପୂର୍ଣ୍ଣରେ ସମାନ ।
ତାହାର କାହିଁ ପାପ ପୁଣ୍ୟ ॥
ଜାତ ଅଜାତ ତାର ନାହିଁ ।
ପୂରିଛି ସର୍ବଘଟେ ରହି ॥
ତାହାର ନାହିଁ ଘଡ଼ି ବେଳା ।
ସଦା ଅନନ୍ଦ ମତ ଭୋଳା ।।
ସହି ପାରଇ ପୃଥ୍ୱୀ ପଣେ ।
ମୋହି ପାରଇ ସର୍ବଜନେ ।।
ଗୃହିଙ୍କ ଚନ୍ଦ୍ର କୃପାଜଳେ ।
ପଛକୁ ଅଗକୁ ନ ବଳେ ।୬୫।
କହଇ ସାରପଣେ କଥା ।
ସାଧୁବାରୂପେ ସାମରଥା ।।
ପାଳଇ ସର୍ବ ଅତ୍ମାଜୀବ ।
ସର୍ବ ଶରୀରେ ସମଭାବ ॥
ଏମନ୍ତ ବ୍ରହ୍ମ ସେ ବୋଲାଇ ।
ଆଶ୍ରୟ କଲେ ମୁକ୍ତି ପାଇ ।।
ଜନ୍ମ ମରଣ ହୋଏ ପାର ।
ହେଉ ରହଇ ଯୁଗାନ୍ତର ॥
ସେ ବ୍ରହ୍ମେ ଲୀନ ହୋଇ ଯାରେ
ନ ପଡ଼େ ସଂସାର ସାଗରେ ।୭୦।
ସେହି ଭକ୍ତଙ୍କ ସର୍ବ ସିଦ୍ଧି ।
ବଚନ କରୁଣା ବାରିଧି ।।
ଯାହା ବୋଇଲେ ତାହା ହୋଇ
ବାକ୍ୟହିଁ ମେଣ୍ଟଣି ନ ଯାଇ ।।
ସେ ବ୍ରହ୍ମ ଯେହୁ ଆଶ୍ରେ କରେ ।
ଜନ୍ମ ମରଣକୁ ନ ଡରେ ।।
ଯେ ପୃଥ୍ୱୀ ଅପ ତେଜ ବାଇ ।
ଏ ପଞ୍ଚଭୂତ ମଧ୍ୟେ ଲହି ।।
ଅବର ଧୂମ୍ର ଆକାଶକୁ ।
ଠାବ ଚାଉ ଏ ହୃଦୟକୁ ।୭୫।
ଚନ୍ଦ୍ର ସୂର୍ଯ୍ୟହିଁ ଦୀପାବଳୀ ।
ବ୍ରହ୍ମାଣ୍ଡ ପାରଇ ସେ କଳ ।।
ନକ୍ଷତ୍ରଗଣ ଶୂନ୍ୟ ମଧ୍ୟେ ।
ଦିଶନ୍ତି ଜ୍ୱଳା କୀଟ ପ୍ରାୟେ ।।
ତେତିଶ କୋଟି ଦେବ ଗଣ ।
ପୁଷ୍ପ ପରାୟେ ଦିଶେ ଜାଣ ।।
ହେ ଅଷ୍ଟ କୋଟି ଯୋଗ୍ନୀ ଦେବୀ
ପ୍ରକୃତିଗଣ ସଙ୍ଗେ ଭାବ ।।
ସପତ ଦ୍ୱୀପ ବୃନ୍ଦେ ପାଣି ।
ତାହା ମନରେ ଥାଏ ଜାଣି ।୮୦।

ଧରନ୍ତୀ ଏ ମହୀମଣ୍ଡଳ ।
ଯେମନ୍ତେ କୁଙ୍କୁମ ବଟା ଶିଳ ॥
ଗୋଖୋଜ ପ୍ରମାଣେ ଏ ପୃଥୀ ।
ଏଥି ଭିତରେ ଦବାଗତି ॥
ଶୃତି ବେଦ ଯେ ଶୃତି ପାଠେ ।
ଶୃତି ଦଗନ୍ତି ଶୃତି ବାଟେ ।୮୩।
ଏତେ ପ୍ରକାରେ ଭକ୍ତ ଯାଉ ।
ନିଷ୍କାମ ମହିମା ମୋହର ॥
ଏ ଧର୍ମେ ଯେଉଁ ପ୍ରାଣୀ ଅଛି ।
ଯମ ତାହାଙ୍କୁ ଡରେ ଛନ୍ତି ।୮୫।
ଏ ଧର୍ମେ ଯେଉଁ ପ୍ରାଣୀ ନାହିଁ ।
ଖପରେ ପଡ଼ିବେ ସେ ଯାଇଁ ॥
ତାହାର ନାହିଁ ଗତି ମୁକ୍ତି ।
ସ୍ୱରୂପ କହିଲୁ ଭଗତି ॥
ଯେ ନିରାକାର ଆଦବ୍ରହ୍ମ ।
ବସିଛି ଏକ ରୂପେ ଜାଣ ॥
ପଣ ପାଠକ ତାହାଠାରୁ ।
ସେ ଅଟେ ବ୍ରହ୍ମାଣ୍ଡର ମେରୁ ॥
ଯେ ପ୍ରାଣୀ ଦଗମ୍ବର ହୋଏ ।
ଭେଦଇ ତୁଳ ଶୂନ୍ୟ ଯାଏ ॥
ଯେ ନିରାକାର ଆଦକନ୍ଦ ।
ଲଗାଇ ଅଛି ଛନ୍ଦ ମନ୍ଦ ॥

ବଡ଼ ନିଷ୍ଠୁର ତାର ହିଆ ।
ନ କରେ କଦାଚତେ ଦୟା ॥
ଶୁଣ ଗୋବିନ୍ଦ ଦେଉ କଉ ।
ଅଙ୍ଗେ ପୁରୁଷ ଅଙ୍ଗେ ସ୍ତ୍ରିରୀ ॥
ମାତା ସ୍ୱରୂପେ ଜାତ କଲା ।
ଭାରଯା ରୂପେ ହରନେଲା ॥
ଗର୍ଭରେ ଉଦର ତା ସ୍ଥୁଳ ।
ଜଳୁଛି ଦାବାଗ୍ନି ଅନଳ ।୯୫।
ତେଣୁ ତାହାର ଦୟା ନାହିଁ ।
ଭକ୍ଷିବା ମୂଳଟି ଅଟଇ ॥
ରୂପ ଭଜନା ଯେତେ କଲେ ।
କେବେହେଁ ତର ନ ପାରଲେ ॥
ମୂର୍ତ୍ତି ଭଜିଲେ ନାହିଁ ପାର ।
ଅଦେହ ଅଁସେଛି ଶରୀର ॥
ଅଦେହ ଭାବ କର ଧ୍ୟାନ ।
ଅଣ ଆକାର ବ୍ରହ୍ମଗ୍ୟାନ ॥
ଏ ନିରାକାର ରୂପ କଲା ।
ଆଦ ଶକ୍ତିର ହସ୍ତେ ଦେଲା ।୧୦୦।
ଧଇଲା ବଡ଼ଲୋକ ବର୍ଗ ।
ଛାଡ଼ିଲା ନୀଳାମ୍ବର ସଙ୍ଗ ॥
ଯୋଗ ନିଦ୍ରାରେ ବିମୋହିତ ।
ନ ଜାଣି ଧର୍ମ ଆଦଅନ୍ତ ॥

କରୁଣା ନେତ୍ରରେ ନ ଗୃହିଁ ।
କାହାକୁ ବୈକୁଣ୍ଠ ନ ନେଇ ।।
ଆପେ ବସିଛ ଆପେ ରକ୍ଷ ।
ଆଗଢ ନଗରଙ୍କ ପାଶ ।।
ସେ ନିରାକାର ପୁତ୍ରବଳା ।
ଏକାନ୍ତ ରୂପ ବାଞ୍ଛା କଲା ।୧୦୫।
ତେଣୁ ରହିଛ ଏକ ରୂପେ ।
ବର ବାଞ୍ଛିତ ଫଳ ସୁଖେ ।।
ସେ ତପ କର ଅଛ ପାଇ ।
ତା ପ୍ରିୟ ତାଙ୍କୁ ଶୋଭା ପାଇ ।।
କାମନା କଳ୍ପନା ସେ ରୂପ ।
ତହିଁ ଭଜିଲେ ନାହିଁ ମୋକ୍ଷ ।।
ବ୍ରହ୍ମ ବୋଲିଣ ଯାକୁ କହି ।
ରଜ ବୀର୍ଯ୍ୟ ସେ ନ ବୋଲାଇ ।।
ତାହାଙ୍କୁ ଦୃଢ଼ ଚିତ୍ତେ ସେବ ।
ରୂପ ରଚନା ସବ ତେଜ ।୧୧୦।
ନିରାକାରଙ୍କ ଯେଉଁ ଅଟେ ।
ମାୟା କରୁଛି ନାନା ବାଟେ ।।
ଯାର ନିଷ୍କାମ ଭକ୍ତି ଦେଖେ ।
କରୁଣା କରଇ ବିବେକେ ।।
ତେଣୁ ଅଭୟ ପୁର ଯିବ ।
ଜନ୍ମ ମରଣୁଁ ନିସ୍ତରିବ ।।

କହିଲ ଶୁଣ ଗୋବିନ୍ଦାଇ ।
ତୁଲ ନୋହିବ ରୂପ ଗୃହିଁ ।।
ରୂପଙ୍କ ପାପ ବୋଲି ଜାଣ ।
କଳ୍ପନା ଶବ୍ଦ ବୋଲି ମଣ ।।
ଏ କଳିଯୁଗରେ ଅଧର୍ମୀ ।
କେଉଁଣି ଯୁଗରେ ନ ଜାଣି ।।
ମେଳଛ ପଣ୍ଡିତ ପାମର ।
ଏ କଳିଯୁଗେ ବଳୀଅର ।।
ଧର୍ମ କର୍ମଙ୍କୁ ଦୂରେ ଫିଙ୍ଗି ।
ଆପ ବଡ଼ିମା କଲେ ଢଙ୍ଗି ।।
ବେଦ ଶାସ୍ତ୍ରକୁ ନ ମାନିଲେ ।
ସାଧୁ ସନ୍ଥଙ୍କୁ ନ ସେବିଲେ ।।
ରାଜ୍ୟହିଁ ଚାରିବାକୁ ସୁଖେ ।
ବାକ୍ୟହିଁ ଦେଲି ଭକ୍ତ ମୁଖେ ।।
ତାହା ନ ମାନି ଜନ ପ୍ରାଣୀ ।
ସତ୍ୟଙ୍କୁ ଭଗ୍ନ କଲେ ପୁଣି ।।
ଏ ଚାରି ବେଦ କଲେ ଗାଏ ।
ବୁଝିଲେ ଖଜା ମୁଢ଼ି ପ୍ରାୟେ ।।
ବେଦମତରେ ନ ଚାଲିଲେ ।
ଅନ୍ୟାୟ ଅଧର୍ମକୁ ଗଲେ ।।
ଏ ଯେଉଁ ବ୍ରହ୍ମ ବାକ୍ୟ ଭେଦ ।
ନ କଲେ କଣ୍ଠିପୁଟ ଭେଦ ।।

ବହୁତ ଅନ୍ୟାୟ ଦେଖିଲୁ ।
ତେଣୁଟି ଅମ୍ଭେ ଉଦେ ହେଲୁ ॥
ସ୍ୱରୂପ ବୁଦ୍ଧ ଅବତାର ।
ନବେଦ କରନ୍ତୁଁ ବିସ୍ତାର ॥
ଧର୍ମରେ ରହୁ ବୋଲି ମହୀ ।
ତେଣୁ ମୁଁ ଆସିଅଛୁ ଧାଇଁ ॥
ଯେ ନିରାକାର ଜ୍ୟୋତିମଣି ।
ତାଠାରୁ ତେଜ କଲା ଆଣି ॥
ଶ୍ରୀଅଙ୍ଗେ ବହୁଅଛୁ ଦେଖ ।
ଅଶେଷ ଜ୍ୟୋତି ଲିଙ୍ଗ ରୂପ ॥
ପଣନ୍ତି ଛଡ଼ାଇ ଆଣିଲୁ ।
ନିରାକାରକୁ କାଟିଦେଲୁ ॥
ମୁଁ ଯିନା କରିଥିଲି ତାକୁ ।
ନାହିଁ ଥଇଲା ମୋ ମନକୁ ॥
ତାହାର ଅବେଗର ଦେଖି ।
ଠୂଲଶୂନ୍ୟରେ ଦେଲି ଫିଙ୍ଗି ॥
ଏବେ କହିବ କି ଆମ୍ଭଙ୍କୁ ।
କେ ଅଛୁ ଆମ୍ଭ ଉପରକୁ ॥
ବତିଶ ନାମ ଷୋଳଅକ୍ଷର ।
ଚାରି ବେଦରୁ ଚପି ସାର ॥
ଅମ୍ଭେ ଆଣିଲୁ ଅମ୍ଭ ଧର୍ମ ।
ଏ କଳିଯୁଗ ଲୋକ ଭ୍ରମ ॥
ଯେସନେ ଆଖି କଟା ପେଡ଼ା ।
ଫେଡ଼ି ଅନଳେ ଦ୍ୟନ୍ତି ପୋଡ଼ା ॥
ସେ ରୂପେ ବେଦୁଁ ଘେନିଆଣି ।
ନିଜ ଅଙ୍ଗେ ରଖିଲି ପୁଣି ॥
ଚାରି ବେଦକୁ କଲେ ସାର ।
ନ ଚହ୍ନି ଓଁକାର ଅକ୍ଷର ॥
ଆମ୍ଭ ବିଗ୍ରହରେ ସେ ନଇଲା ।
ସେ ଚାରି ବେଦ କାନ୍ଦିଗଲା ॥
ଶୁଣିଲଟିକି ହେ ଭଗତ ।
ନିରାକାରଙ୍କ ଭକ୍ତି ମତ ॥
ତାକୁଟି ଠୂଲ ଶୂନ୍ୟ କହି ।
ହୃଦୟେ ଜ୍ୟୋତିବ୍ରହ୍ମ ରହି ॥
ସେ ଯିନା ଅଟେ ନିରାକାର ।
ଏ ତଥ୍ୟ ନିର୍ଣ୍ଣୟ ବିଚାର ॥
ଚାରି ବେଦଟି ଚାରି ଜାନୁ ।
ଧନୁର୍ବେଦଟି ଅଟେ ତନୁ ॥
ମୁଖଟି ଶିଶୁବେଦ ଜାଣ ।
ଗୋବନ କରି ଅନୁମାନ ॥
ବ୍ରହ୍ମ ଖେଳୁଛି ମୁଖେ ମୁଖେ ।
ଜ୍ଞାନ ସାଧୁରୁ ଆତ୍ମା ପୁଖେ ॥

ସୁଜନେ ଶୁଣ ମନ ଦେଇ ।
ଶ୍ରୁତିନିଷେଧ ଗୀତା ଏହି ॥
ସେ ଗୁରୁ ଶିଷ୍ୟଙ୍କ ଚରଣ ।
ଭଣେ ପାମର ଭୀମ ହୀନ ॥

ଇତି ଶ୍ରୀ ଶ୍ରୁତିନିଷେଧ ଗୀତା ସୁଜନଜନହିତା ଅନାଦି ଗୋବିନ୍ଦ ସମ୍ବାଦେ ନିରାକାର ଠୁଳ ରୂପ ଚରିତ କଥନେ ଚାରି ବେଦ ପାରସ୍ୱତ ବର୍ଣ୍ଣନେ ନିର୍ଣ୍ଣୟ ବାକ୍ୟ ବିସ୍ତରଣେ ନାମ ପ୍ରଥମ ଅଧ୍ୟାୟ ।

---

## ଦ୍ୱିତୀୟ ଅଧ୍ୟାୟ

ଗୋବିନ୍ଦ ଭକ୍ତ ଅତି ତୋଷେ ।
ପୁଚ୍ଛଇ ଶ୍ରୀଗୁରୁ ପାଖୁଣେ ॥
ହେ ପ୍ରଭୁ ବ୍ରହ୍ମଜ୍ଞାନେ ଶ୍ରେଷ୍ଠ ।
ବ୍ରହ୍ମା କିମ୍ପାଇଁ ଗଲେ କାଠ ॥
ଅବର ହରିହର ଦୁଇ ।
ଏ ଧର୍ମେ ଝର୍ପା କାଠ ହୋଇ ॥
ସୁଦୟା କରି କହ ମୋତେ ।
କର୍ଣ୍ଣରେ ଶୁଣି ଯିବ ପ୍ରତେ ॥
ତିନି ଭୁବନେ ନିତ୍ୟଦେବେ ।
ବିହରୁଥିଲେ ଚାରିଯୁଗେ ।୫।
ଏ କଥା ବିହିତ ସଂଶୟ ।
ଶ୍ରୁତିନିଷେଧ ଫେଡ଼ି କହ ॥
ଯେ ସତ୍ୟ ତ୍ରେତୟା ଦ୍ୱାପରି ।
ଲୀଳା ବିନୋଦେ ପରିଚରି ॥
ଶରୀର ଦେହ ଧରି ଯେତେ ।
ଥିଲେ ସେ ତାହାଙ୍କ ଅଧୃତେ ॥
ଏ ପୁଣି ହୋଇବ କେମନ୍ତ ।
ନ ଜାଣି ବ୍ରହ୍ମ ଆଦି ଅନ୍ତ ॥

ଅନାଦିବ୍ରହ୍ମ ଉବାଚ

ଶୁଣ ଭଗତ କହୁଁ ତୋତେ ।
ବ୍ରହ୍ମଚରିତ ଯେଉଁ ମତେ ।୧୦।
ସତ୍ୟ ଯୁଗରେ ସତ୍ୟ ଲୀଳା ।
ସହସ୍ରେ ମୁଖ ବ୍ରହ୍ମା ଥିଲା ॥
ସହସ୍ର ମୁଖେ ଚାରି ବେଦ ।
ଅଧିକ କରି ପ୍ରାନ୍ତ ଆଦ୍ୟ ॥
ବେଦରେ ଲୋଡ଼ିଲା ବ୍ରହ୍ମକୁ ।
ଠିକରେ ନ ପାଇଲା ତାଙ୍କୁ ॥

ସେ ବ୍ରହ୍ମା କଣ୍ଠ ଦନ ଅନ୍ତେ ।
ନାଶ ହୋଇଲେ ଏହି ମତେ ॥
ଆବର ଷୋଳ ମୁଖ ବ୍ରହ୍ମା ।
ଶୁଣ ହେ। ତାହାଙ୍କ ମହିମା ॥
ଷୋଳ ମୁଖରେ ଷୋଳ ବେଦ ।
ପଢ଼ି ସେ ହୋଇଲେ ତବଦ ॥
ସେ ବ୍ରହ୍ମ ଭେଦ ନ ପାଇଲେ ।
ସେହି ବ୍ରହ୍ମାହିଁ ଶୂନ୍ୟଗଲେ ॥
ଆବର ବ୍ରହ୍ମା ବେଦପତି ।
ବାର ମୁଖରେ କଲେ ଭକ୍ତି ॥
ବାର ଅକ୍ଷର ବାର କଲେ ।
ଭ୍ରମି ସେ କଣ୍ଠ ନ ପାଇଲେ ॥
ଏମନ୍ତେ କଣ୍ଠଦନ ଅନ୍ତେ ।
ନାଶ ହୋଇଲେ ଏ ଜଗତେ ॥
ଆବର ବ୍ରହ୍ମା ଦଶ ମୁଖୀ ।
ଦଶାଙ୍ଗ ବେଦକୁ ନରେପି ॥
ଦଶ ଅକ୍ଷର ଦଶ ବେଦ ।
ଆଦୃଶ୍ୟ ନୋହିଲେ ସେ ପଦ ॥
ତେଣୁ ସେ ବ୍ରହ୍ମ ବହିଗଲେ ।
ଦଶାଙ୍ଗ ଯୋଗ ପ୍ରବର୍ତ୍ତିଲେ ॥
ଆବର ଅଷ୍ଟମୁଖ ବ୍ରହ୍ମା ।
ଶୁଣ ହେ ତାହାର ମହିମା ॥

ଅଷ୍ଟମୁଖରେ ବେଦ ପଢ଼ି ।
ବ୍ରହ୍ମକୁ ନ ପାଇଲେ ଲୋଡ଼ ॥
ତେଣୁ ସେ ବ୍ରହ୍ମ ନାଶ ଗଲେ ।
ଅଷ୍ଟାଙ୍ଗ ଯୋଗହିଁ ବଢ଼ିଲେ ॥
ଆବର ବ୍ରହ୍ମ ଛଡ଼ମୁଖୀ ।
ଛଡ଼ ବେଦକୁ ମନେ ରଖି ॥
ଛଡ଼ ବେଦରେ କଲେ ଲୟେ ।
ସେ ବ୍ରହ୍ମ ପଡ଼ ମାୟା ମୋହେ ।
ଛଡ଼ ଅକ୍ଷର ଛଡ଼ ଚକ୍ର ।
ତହୁଁ ଜନ୍ମିଲେ କାମ ବକ୍ର ॥
ବୀଜକୁ ସାତ ରଛ କଲେ ।
ସପ୍ତ ବ୍ରହ୍ମାଣ୍ଡ ବୋଲାଇଲେ ।୩୦।
ଏ କଳଯୁଗର ବଢ଼ିମା ।
ଅଛି ସେ ଚତୁର୍ମୁଖ ବ୍ରହ୍ମା ॥
ଗଲେ କୋଟିଏ ବ୍ରହ୍ମା ବହି ।
ଅରୂପ ବ୍ରହ୍ମ ଚିହ୍ନି ନାହିଁ ॥
ସେ ବ୍ରହ୍ମ ଚିହ୍ନି ଯେବେ ଥାନ୍ତା ।
ଦେହ କିପାଇଁ ବହିଥାନ୍ତା ॥
ଏ ଚତୁର୍ମୁଖ ବ୍ରହ୍ମ ଅଛି ।
ପିଣ୍ଡ ଗଢ଼ିହିଁ ନ ଜାଣନ୍ତି ॥
ଜାତକ ସାବିତ୍ରୀ ହସ୍ତରେ ।
ଦେଲେ ସେ ଯୁବତୀ ସ୍ନେହରେ ॥

ବୋଇଲେ ମୁଁ ଅଛୁ କରତା ।
ମୋ ଠାରୁ କେ ଅଛୁ ଶକତା ॥
ସକଳ ଜୀବ ପିତାମାତା ।
ମୁଁ ଅଟେ ଜଗତରେ ପିତା ॥
ଏହା ବଗ୍ୟର ବେଦପନ୍ତ ।
ବହିଲେ ବଡ଼ିମା ଶକନ୍ତ ॥
ବଡ଼ିମା ପଦ ନୋହେ ଭଲ ।
ପଛ ଅଗକୁ ହୋଏ ଶଲ ॥
ଏ କଳିଯୁଗେ ଜଦେ ହେଲୁ ।
ବ୍ରହ୍ମାର ପଦ ଛଡ଼ାଇଲୁ ।୪୦।
ଏ ବ୍ରହ୍ମା ବଡ଼ାଇ ଦାରୁଣ ।
ହେଲେ ସେ ଅକାଳ ମରଣ ॥
ଖଣ୍ଡ ବାଡ଼ିଆ କର ଗଡ଼ି ।
ଥଙ୍କା ବଚନ ଚତ୍ରେ ଛଡ଼ି ॥
ଯହିଁ ନୋହିଲେ ଅଙ୍କାପାଳ ।
ତେଣୁ ଉ ବଳେ ବ୍ରହ୍ମାକୁଳ ॥
ମୁଁ ଅଟେ ଅନାଦି ପୁରୁଷ ।
କରବ କଳ ଯୁଗ ଶେଷ ॥
ଆବର ଶୁର ବେଦ ବାକ୍ୟ ।
ଏ ଅଙ୍ଗେ କରିଅଛୁ ଚକ୍ଷ ॥
ଯହିଁ ଏ କଳ ନକଟିଲେ ।
ତେଣୁ ଏ ବ୍ରହ୍ମା କାଠଗଲେ ॥

ଶୁଣ ଗୋବନ୍ଦ ଚୂଡ଼ାମଣି ।
ମାନବା ବସ୍ତୁ ବେଦ ବାଣୀ ॥
ପୂର୍ବେ ସେ ବସ୍ତୁ ଦେବ ଥିଲେ ।
ବଟ ପୁଟରେ ନାଶ ଟଳେ ॥
ବଟ ବୃକ୍ଷର ପତ୍ର ଯେତେ ।
ବସ୍ତୁହିଁ ମର ଗଲେ ତେତେ ॥
ବସ୍ତୁ ନାଶନ ବଟ ସେହି ।
ରକତ ବର୍ଣ୍ଣି ତା ରୂପଇ । ୫୦ ।
ସେଠାରେ ଅନନ୍ତ ଶୟନ ।
କ୍ଷୀର ସିନ୍ଧୁର ମଧ୍ୟେ ଜାଣ ॥
ବସ୍ତୁ ଅଛନ୍ତି କୁଡ଼ କୁଡ଼ି ।
ସାଗର ପର୍ଯ୍ୟେ ଯେ ବେଢ଼ି ॥
ଅନେକ କ୍ଷୀର ସିନ୍ଧୁ ବାସୀ ।
ମାୟା ସାଗରେ ଗଲେ ଭାସି ॥
ସତ୍ୟରେ ଶ୍ରୀ ଦଧି ବାମନ ।
ନିତ୍ୟ ଅଙ୍ଗରେ ଉଦପନ ॥
ଦଇତ କରତା ସୃଜନା ।
ଗଲେ ଯେ ଶ୍ରୀଦଧି ବାମନା ॥
ଆବର ସତ୍ୟ ନାରାୟଣ ।
ମାନବ ଅଙ୍ଗେ ଉତପନ ॥
ଏ ରୂପ କେତେ ନାରାୟଣ ।
ନଦୀ ବଡ଼ିର ପ୍ରାୟେ ଜାଣ ॥

ଏ ରୂପେ ଯାଇଛନ୍ତି ବହୁ ।
ଚିର କାଳହିଁ ରହି ନାହିଁ ॥
ଆବର ରାମଚନ୍ଦ୍ର ଯେହୁ ।
ଜାତ ହୋଇଲେ ଦେହ ବହି ।
ତ୍ରେତାରେ ବଡ଼ିମା ବହିଲେ ।
ରାବଣ ମାଇଲୁ ବୋଇଲେ ।୬୦।
ଅନେକ ରାମ ଗଲେ ମରି ।
କେହି ନ ପାରି ଦେହ ଧରି ॥
ଆବର କୃଷ୍ଣଚନ୍ଦ୍ର ଜାଣ ।
ଦ୍ୱାପର ଯୁଗେ ଉତପନ ॥
ବୋଇଲେ ଅମ୍ଭେ ହୋ କରତା
ସକଳ ଜୀବର ଧରନ୍ତା ॥
ମୋଠାରୁ କେହି ନାହିଁ ବଡ଼ ॥
ବଡ଼ିମା ପଣେ କଲେ ଗଡ଼ ॥
ଅନେକ କୃଷ୍ଣଚନ୍ଦ୍ର ଗଲେ ।
ପିଣ୍ଡ ବଞ୍ଚାଇ ନ ପାରିଲେ ॥
ତହିଁ ଉତ୍ତାରୁ ଜଗନ୍ନାଥ ।
କଳି ଆଗମେ ହେଲେ ଗୁପ୍ତ ॥
ଦେହ ଛାଡ଼ିଲେ ରଖା ନାହିଁ ।
ଅଛପ୍ନ ହୋଇ ରହି ନାହିଁ ॥
ଅନେକ ମତ୍ସ୍ୟ କଚ୍ଛରୂପ ।
ନୃସିଂହ ବରେହା ସ୍ୱରୂପ ॥

ଦଶାଙ୍କ ଅବତାର ଗଲେ ।
ନସ୍ତର କେହି ନ ପାରିଲେ ॥
ବଡ଼ ହେଉଛନ୍ତି ଜଗନ୍ନାଥ ।
ଛନ୍ତି ବୋଲନ୍ତି ସାଧୁସନ୍ଥ ।୭୦।
ସେ କଥା ଅଟଇ ପ୍ରମାଣ ।
ଗୋବିନ୍ଦଙ୍କର ଅନୁମାନ ॥
ସେ ଯେବେ ଅଟେ ଜଗନ୍ନାଥ ।
କପାଇଁ କଲେ ଏଡ଼େ କୃତ୍ୟ ॥
ହିଂସାବାଦକୁ ଉପୁଜାଇ ।
ବଡ଼ିମା ପଦ କଲେ ସେହି ॥
ମୁଁ ଅଟେ ଜଗତର ନାଥ ।
କରିବି ସର୍ବ ସମାପତ ॥
ଶ୍ରୀକ୍ଷେତ୍ରବରେ ପମ କଲେ ।
ଏକ ସ୍ଥାନରେ ଭୁଞ୍ଜାଇଲେ ।୭୫।
ସେ ଯେବେ ଜଗନ୍ନାଥ ହୋନ୍ତା
ଠାବକେ କପାଇ କରନ୍ତା ॥
ଜଗତ ଯାକେ ସମ ତତ୍ତ୍ୱ ।
ତେବେ ବୋଲନ୍ତି ଜଗନ୍ନାଥ ॥
ତାର ମହିମା ଯେତେ ଥିଲେ ।
ପଞ୍ଚ କୋଶରେ ସେ କାଟିଲେ ॥
ଏ କଳି ଯୁଗେ ଉଦେ ହେଲୁ ।
ଜଗନ୍ନାଥର ପଦ ନେଲୁ ॥

ତାହାର କଲା କୀର୍ତ୍ତି ହର ।
ସକଳ ନେଲୁ ଜ୍ବର କର ।।
ଛଡ଼ାଇ ବସ୍ତୁ କଲାଖଣ୍ଡ ।
ଏକାନ୍ତେ ବୁଝିବୁ ବ୍ରହ୍ମାଣ୍ଡ ।।
ସେ ଜଗନ୍ନାଥ କସ କଲ୍ଲ ।
ଲକ୍ଷ୍ମୀ ହଣ୍ଡାରେ ପଡ଼ି ଦେଲ୍ଲ ।।
ତରୁଣୀ ପାଲେ ସେ ଜଗତ ।
ଦୁର୍ଭିକ୍ଷ ପଡ଼ିଲ୍ଲ ବହୁତ । ୮୩ ।
ଶୁଣ ଗୋବିନ୍ଦ ମନ ଦେଇ ।
ବସ୍ତୁ ତରତ ଅଟେ ସେହି ।।
ଏଥୁଁ ଉତ୍ତରେ ମହାଦେବ ।
ଶୁଣ ଗୋବିନ୍ଦ ତାର ଭାବ ।।
ଅନେକ ମହାଦେବ ଥିଲେ ।
ପାର୍ବତୀ ଖପରେ ପଡ଼ିଲେ ।।
ଏ ରୂପେ କେତେ ଗଲେ ବହି
ଅକ୍ଷୟ ଅଙ୍ଗେ ରହି ନାହିଁ ।
ଯୋଗାଧି ପୁରୁଷ ଯେ ଜାଣ ।
ଯୋଗରେ ଅଛନ୍ତି ପ୍ରମାଣ ।।
ଅଷ୍ଟାଙ୍ଗ ଯୋଗ ତାକୁ ଦେଇ ।
ଅଧିକେ ତପସ୍ୟା କରାଇ ।।
ମାତୃ ହରଣ ଦୋଷ ଯୋଗୁଁ ।
ତପସ୍ୟା ଫଳ ବେଦ ମାଗୁଁ ।
ତା ପ୍ରୟୋଜନ ତାକୁ ଦେଇ ।
ଶୂନ୍ୟ ମଣ୍ଡଳେ ଅମ୍ଭେ ରହି ।।
ଯୋଗ ତପସ୍ୟା ସେହୁ କଲ୍ଲ ।
ତନ ଲକ୍ଷହିଁ ବହି ଗଲ୍ଲ । ୯୨ ।
ତେବେ ନ ମେଣ୍ଟେ କ୍ରୋଧକାମ ।
ଅଷ୍ଟାଙ୍ଗ ଯୋଗେ ହେଲ୍ଲ ଭ୍ରମ ।।
ପାର୍ବତୀ ସଙ୍ଗତରେ ଲାଇ ।
ଏକାନ୍ତେ କ୍ରୀଡ଼ା କରୁଥାଇ ।।
ଘଣେ ନ ଛଡ଼େ ସ୍ତ୍ରିରୀ ସଙ୍ଗ ।
ଯୋଗାନ୍ତ ମାର୍ଗ ହୋଏ ଭଙ୍ଗ ।।
କାମକୁ ନ ପାରିଲ୍ଲ ମେଣ୍ଟି ।
ତେଣୁ ତାହାକୁ ଦେଲ୍ଲ କାଟି ।।
ଅଷ୍ଟାଙ୍ଗ ଯୋଗ ମଧ୍ୟେ ଜାଣ ।
ଲେଢ଼ି ନ ପାଇ ବ୍ରହ୍ମ ତତ୍ତ୍ୱ ।।
ତେଣୁ ସେ ମଉନେ ବସିଲ୍ଲ ।
ହୃଦରେ ନାମ ଲୟେ କଲ୍ଲ ।।
ଏମନ୍ତେ ତାହାର ଭବିଷ୍ୟ ।
ନ ଯାଇ ମାତୃହର ଦୋଷ ।।
ଆଜ୍ଞାକୁ ନ ପାରିଲ୍ଲ ରଟି ।
ତେଣୁ ତାହାକୁ ଦେଲୁ କାଟି ।।
ପ୍ରଳୟ ସଂହାରଣ ପଦ ।
ପାର୍ବତୀ ହସ୍ତେ ଦେଲ୍ଲ ଭେଦ ।।

ସେ ଉମାଦେବୀ ଆଦିଶକ୍ତି ।
ଭକ୍ଷଣ କଲ୍ଲ ବିବା ରୀତି ॥
ଶୁଣିଲଟିକି ହେ ଗୋବିନ୍ଦ ।
ବ୍ରହ୍ମାଦି ହରିହର ବୃନ୍ଦ ।
ମହାଦେବର କଲା ଖଣେ ।
ତୋର କୌପୁଣୀ କଲି ପୁଣି ॥
ଅଙ୍ଗରେ ମହାଦେବ ରୂପ ।
ବହୁଛି ପ୍ରତ୍ୟକ୍ଷରେ ଦେଖ ।୧୦୫

ଗୋବିନ୍ଦ ଉବାଚ

ହେ ପ୍ରଭୁ ବ୍ରହ୍ମାଣ୍ଡଗୋସାଇଁ ।
ଏହି ଶରୀରେ ଦିଅ କହି ॥
କେ ପୁଣ କେଉଁଠାରେ ଅଛି ।
ମନୁ ସଂଶୟ ନ ଯାଉଛି ॥
ଏ ବ୍ରହ୍ମା ବିଷ୍ଣୁ ଶମ୍ଭୁ ଲୋକେ ।
ଏହାଙ୍କୁ ମାନୁଛନ୍ତି ଥୋକେ ॥
ବଡ଼ ବଡ଼ିମା କହୁଛନ୍ତି ।
ବ୍ରହ୍ମାଦି ବିଷ୍ଣୁ ଶିବ ମୂର୍ତ୍ତି ॥
ଏହାଙ୍କୁ ଏକା ଅମ୍ଭେ ଜାଣୁ ।
ଆନ ମହିମାଙ୍କୁ ନ ଜାଣୁ ।୧୧୦
ଏହା ବୋଲନ୍ତି ଜଗତରେ ।
ସଂଶୟ ଲାଗୁଛି ମନରେ ॥
ହେ ସ୍ୱାମୀ କର ଦୟା ଚିତ୍ତେ ।
ଶୁଣି ମନରେ ଯିବ ପ୍ରତେ ॥

ଅନାଦିବ୍ରହ୍ମ ଉବାଚ

ଶୁଣ ସଖୀରେ ଭକ୍ତ ବୀର ।
କହିବା ଶାସ୍ତ୍ରାର୍ଥ ସାର ॥
ବ୍ରହ୍ମା ଯେ ନାଭିକମଳରେ ।
ବାସ ତା ହୃଦୟ ମଣ୍ଡଳେ ॥
ସେଠାରୁ ଝରୁଛି କଳଣା ।
ମନ ପବନ ଯୋଗ ସେନା ॥
ଘଟରେ ବ୍ରହ୍ମାଙ୍କୁ ଚହିଲେ ।
ଫଳ ସମ୍ପୂର୍ଣ୍ଣ ହୋଏ ଭଲେ ॥
ଶାସ୍ତ୍ରାର୍ଥଙ୍କୁ ଯେ ନ ଜାଣି ।
ବାହାରେ ଭ୍ରମି ମରେ ପ୍ରାଣୀ ॥
ହୃଦକମଳେ ଜଗନ୍ନାଥ ।
ସ୍ୱରୂପ ବୃନ୍ଦ ହେ ଭଗତ ॥
ଲକ୍ଷ୍ମୀଙ୍କ ସଙ୍ଗତରେ ଧେନ ।
ବାସ ତା ହୃଦୟ ମୂର୍ଦ୍ଧନ ॥
କଳ୍ପବଟରେ ଅଛି ରହି ।
ନୀଳକନ୍ଦର ତାକୁ କହି ॥
ଷାଠିଏ ଗୁଣ୍ଡା ଭୁଞ୍ଜୁ ଅଛି ।
ସେହିଟି ଷାଠିଏ ପଦ୍ମଟି ॥

ଏହି ପ୍ରକାରେ ଭକ୍ତ ବୀର ।
ଏହି ଶରୀରେ ଭେଦ କର ॥
କଣ୍ଠ ମଣ୍ଡଳେ ସଦାଶିବ ।
ଜିହ୍ୱା ତଳକୁ ତାର ଠାବ ॥
ଢୋଡ଼ାଣି ପାଣି ଜଳ ପାଇ ।
ତେଣୁ ମହେଶ ତୋଷ ହୋଇ ॥
ଘଟରେ ପୂଜ ମହାଦେବ ।
ଛାଡ଼ ପଷାଣ ବାହ୍ମ ଭାବ ॥
ତାକୁ ସେବଲେ ସିନା ଫଳ ।
ଶାନ୍ତଶୀଳକୁ କରି ଫଳ ॥
ଘଟରେ ବ୍ରହ୍ମକୁ ନ ଚହ୍ନି ।
ବାହ୍ୟରେ ଭ୍ରମୁଥାନ୍ତି ପୁଣି ॥
ଚିତ୍ରପଟକୁ ନେତ୍ରେ ଦେଖି ।
ମନ ଆନନ୍ଦେ ହୋଇ ସୁଖୀ ॥
ଏ ଘଟେ ଜଗନ୍ନାଥ ଅଛି ।
ପ୍ରତିମା ମିଛରେ ପୂଜୁଛି ॥
ମୂର୍ତ୍ତି ପ୍ରତିମା ଶୁଷ୍କ କାଠ ।
ସେ ପୁଣି ନେବେ କି ବୈକୁଣ୍ଠ ॥
ମିଥ୍ୟାରେ ଭୁଲି ମରେ ପ୍ରାଣୀ ।
ଘଟ ପ୍ରତିମାକୁ ନ ଚହ୍ନି ॥
ତୁ ପରି ଅଟୁ ଜଗନ୍ନାଥ ।
ତୋ ଶକ୍ତି ତୋତେ ନାହିଁ ଅନ୍ତ

ମାନବ ଦେହଧାରୀ ହୋଇ ।
ତପୋବନରେ ଅଛ ରହି ॥
ଏ କଳିଯୁଗ ଏତେବେଳେ ।
ନିଜ ଅଙ୍ଗରେ ଏ ମଣ୍ଡଳେ ॥
ଶୁଣ ଭଗତ ଦାମୋଦର ।
ମହିମା ନାମେ ଆଶ୍ରେ କର ॥
ମହିମା ଉଦେ ହେଲେ ମହୀ ।
ମହତ ପୁରୁଷଟି ସେହି ॥
ଏ କଳିଯୁଗେ ଯେତେ ନର ।
ମହିମା ଭଜି ହେବ ପାର ॥
ବ୍ରହ୍ମମଣ୍ଡଳେ ଶତେ ବାର ।
ଫେରିଗଲାଣି ସାତଥର ॥
ଚଉଦ ବ୍ରହ୍ମାଣ୍ଡ ଭିତରେ ।
ବାନା ବୁଲୁଛି ସର୍ବଦ୍ୱାରେ ॥
ଏକୌଶ ପୁର ବ୍ରହ୍ମାଣ୍ଡକୁ ।
ବୁଲାଇ ନେଲେଣି ବାନାକୁ ॥
ବୈକୁଣ୍ଠପୁର ବାନା ସେହି ।
ତାହାଙ୍କୁ ନ ଚିହ୍ନିଲେ କେହି ॥
ଅମୃତ କହୁଛି ନାହିଁ ଦୋଷ ।
ଏ ଯୁଗ ହୋଇଲାଣି ଶେଷ ॥
କଳିଯୁଗରେ ହୁଇଦଣ୍ଡ ।
କମ୍ପିବ ପୃଥ୍ୱୀ ନବଖଣ୍ଡ ॥

ହୋଇବ ବହୁତ ଅନର୍ଥ ।
ଶୁଣିଲୁଁ ଠଙ୍କ ଖାରଂ ଭକ୍ତ ।।
ଏ କଳିଯୁଗର ବେଭାର ।
ହୋଇବ ନଷ୍ଟ ଦେଖ ଖାର ।।
ସେ ଗୁରୁ ଶିଷ୍ୟ ପାଦ ଧାଇ ।
ଭଣେ ଅର୍ଖିତ ହୀନ ଭୋଇ ।।

ଇତି ଶ୍ରୀ ଶ୍ରୁତିନିଷେଧ ଗୀତା ସୁଜନଜନହିତା ଅନାଦି ଗୋବିନ୍ଦ
ସମ୍ବାଦେ ବ୍ରହ୍ମା ବିଷ୍ଣୁ ଶିବ ନିର୍ଣ୍ଣୟ କଥନେ ନାମ
ଦ୍ୱିତୀୟ ଅଧ୍ୟାୟ ।

---

## ତୃତୀୟ ଅଧ୍ୟାୟ

ଅନନ୍ତେ ଗୋବିନ୍ଦ ଭଗତ ।
ନମି ଶ୍ରୀଗୁରୁ ପାଦଗତ ।।
କର ଅଞ୍ଜଳି ଦେଇ ଶିରେ ।
ଛନ୍ଦରେ ବିନୟ ଭାବରେ ।।
ହେ ପ୍ରଭୁ ଦୟା ମୋତେ ହୁଅ ।
କରୁଣା ଜଳ ମୋତେ ଦିଅ ।।
ତେତିଶ କୋଟି ଦେବଗଣ ।
କପାଇଁ କାଟଗଲେ ପୁଣ ।।
ଆକାଶ ମାର୍ଗେ ଦିଗପାଳେ ।
କେବଣ ଅପରାଧ କଲେ । ୫ ।
କପାଇଁ କାଟଗଲେ ସେହୁ ।
ଏ କଥା କହିବା ବୁଝାଇ ।।
ସ୍ୱରୂପ ଜାଣିବ କେମନ୍ତେ ।
ଏ ବାକ୍ୟ ଆଜ୍ଞା ହୋଉ ମତେ ।

ଅନାଦି ବ୍ରହ୍ମ ଉବାଚ ।

କହନ୍ତି ବ୍ରହ୍ମାଣ୍ଡ ଗୋସାଇଁ ।
ଶୁଣ ଗୋବିନ୍ଦ ମନ ଦେଇ ।।
ତେତିଶ କୋଟି ଦେବଗଣ ।
ସ୍ୱର୍ଗ ଭୁବନେ ଥିଲେ ପୁଣ ।।
ଅମୃତ ଅବତାର ଦେଖି ।
ଅଇଲେ ସକଳ ଉପେକ୍ଷି ।।
ସ୍ୱର୍ଗ ଭୁବନ ଭୁଞ୍ଜା ପଡ଼ି ।
ବାସରୁ ଅସିଛନ୍ତି ଛଡ଼ି ।।

ନର ଦେହରେ ଉତପନ ।
ସର୍ବ ଗୃହରେ ହୋଇ ଜନ୍ମ ॥
ଯେତେ ଏ ମହିମାଙ୍କୁ ସେବ ।
ସର୍ବେ ଅଟନ୍ତି ଦେବ ଅଙ୍ଗୀ ॥
ଯେ ଯୋଗସମ ଶେଷ ହେଲେ ।
ସବୁ ଏ ସଙ୍ଗେ ଯୋଜିଗଲେ ॥
ଶୂନ୍ୟ ହୋଇଛି ସ୍ୱର୍ଗପୁର ।
ନର ମାନବେ ଅଗୋଚର ॥
ଆଉ ଯେତେକ ସ୍ୱର୍ଗେ ଛନ୍ତି ।
ସ୍ୱପ୍ନ ଆଶ୍ରିର କରୁଛନ୍ତି ॥
ତୁମ୍ଭେ ହୋଇଲ ମର୍ତ୍ତ୍ୟେ ଜନ୍ମ ।
ଏ ପୁଣ ଅଟେ କେଉଁ ଧର୍ମ ॥
ଦେବଭୁବନ ଲେଖ ହୋଇ ।
ମର୍ତ୍ତ୍ୟେ ଜନ୍ମିଲ କାହିଁପାଇଁ ॥
ଅନେକ ଧୂପ ଦୀପ ପୁଷ୍ପ ।
ଛାଡ଼ିଲ ଭୋଗାଦିର ଆଶ ॥
ଧୂପ ଦୀପଇଁ ନିରନ୍ତରେ ।
କର୍ପୂର ଅର୍ଘ୍ୟ ଚନ୍ଦନରେ ॥
ସେ ଭୋଗ ଛାଡ଼ି ତୁମ୍ଭେ ଆସି ।
ମର୍ତ୍ତ୍ୟରେ ହେଲ ତପବାସୀ ॥
ତପୋବନରେ କଷ୍ଟ କାର୍ଯ୍ୟ ।
ମହିମା ନାମ ଜପି ଭଜ ॥
ଏଥିରେ କିଛି ଲାଭ ନାହିଁ ।
ଭୋଗ ଯୋଗାହିଁ ନ ମିଳଇ ॥
ଚାଲ ସକଳେ ଆମ୍ଭେ ଯିବା ।
ଆକାଶ ମଣ୍ଡଳେ ରହିବା ॥
ପ୍ରାଣୀଙ୍କ ହୃଦେ ଦେବେ ପଶି ।
ସ୍ୱପ୍ନ ଆଚରୁଥାନ୍ତି ଆସି ॥
ଗତ ଯୁଗରେ ଦେବକୁଣ୍ଠ ।
ଲାଗି ରହିଛି ହେନେ ପଠ ॥
ସୁର ଅସୁର ଦପ୍ରକାରେ ।
ଚଉଦ ବ୍ରହ୍ମାଣ୍ଡ ଭିତରେ ॥
ସ୍ୱପ୍ନ ନୋହିଲେ ଲୀଳା ନାହିଁ ।
କୀରତି ରହିବ ସେ କାହିଁ ॥
ସୁର ଅସୁର ସର୍ବକାଳେ ।
ଅଛନ୍ତି ଧରଣୀ ମଣ୍ଡଳେ ॥
ଯେତେ ଦିବସଁ କଳିଯୁଗ ।
ବ୍ରହ୍ମାଣ୍ଡେ ଆସି ହେଲା ଭୋଗ ।
ଏ କଳିଯୁଗଟି କଳଙ୍କା ।
ଧର୍ମକୁ କରୁଛି ଗୋଳିଆ ॥
ଯାହାର ନାମବ୍ରହ୍ମେ ମନ ।
ଦେବତାମାନେ କଲେ ସ୍ୱପ୍ନ ॥
ସେହି ସକାଶେ ଭକ୍ତ ଜାଣ ।
କାଠ ହୋଇଲେ ଦେବଗଣ ॥

ନାମେ ହୋଇଲେ ବ୍ରହ୍ମଦ୍ୱେଷୀ ।
ଧର୍ମଲଙ୍ଘିଲେ ଗର୍ବ ବହି ॥
ତେଣୁ ତାହାଙ୍କ କଲା ଆଣି ।
ଥୋଇଲୁଁ ନିଜ ଅଙ୍ଗେ ପୁଣି ॥
ଦେବକଣ୍ଟକ ଆଗମନ ।
ହରିଲୁଁ ବ୍ରହ୍ମ କର୍ମମାନ ॥
ବ୍ରହ୍ମରେ କଳଙ୍କ ହୋଇଲେ ।
ତେଣୁଟି ଦେବକାଠ ଭଲେ ॥
ଅମ୍ଭେ ଗଢନା କଲୁଁ ତାଙ୍କୁ ।
ନଇଲା ଅମ୍ଭର ମନକୁ ॥
ଯେତେ ଏ ଦେବ ସହଚରୀ ।
ରାତ୍ରି ଦିବସ ବିଘ୍ନ କରି ॥
ତେଣୁଟି ଅଙ୍ଗ ହେଲା କୋପ ।
ଲେଛିଲୁଁ ଦେବତାଙ୍କ ରୂପ ॥
ଏ ସର୍ବେ କ୍ରିୟା ଅଧିକାରୀ ।
ବ୍ରହ୍ମକୁ ଯୋଗ୍ୟହିଁ ନ ପାରି ॥
ଏ ବେଦ ବାକ୍ୟର ଲକ୍ଷଣେ ।
ଛିଡ଼ି ପଡ଼ିଲେ ଧର୍ମବାଟେ ॥
ଏ ଯେ ବ୍ରହ୍ମକୁ ନୋହେ ଯୋଗ୍ୟ
ନିଷେଧ ହେଲା ତାଙ୍କୁ ଭୋଗ ॥
ନିଷ୍କାମ ବ୍ରହ୍ମ ନ ଚହଇ ।
ସେ ବ୍ରହ୍ମ ଅଯୋଗ୍ୟ ଅଟଇ ॥

ସକାମେ ଛନ୍ତି ଦେବଗଣ ।
ବ୍ରହ୍ମକୁ ନୋହିଲେ ଭଜନ ॥
ତେଣୁଟି ଦେବ ଅବଶେଷ ।
ନାହିଁ ଭୁଞ୍ଜନ୍ତି ମୋର ଦାସ ॥
ଦେବ ପ୍ରସାଦେ ମୁକ୍ତି ନାହିଁ ;
ମୋ ଭକ୍ତେ ଭୁଞ୍ଜିବେ କିମ୍ପାଇ ॥
ମୋତେ ଚହିଲେ ଛୁଟେ ଭ୍ରମ ।
ତେଣୁ ସ୍ୱତନ୍ତ୍ର କ୍ରିୟା କର୍ମ ॥
ସଦା ନିଷ୍କାମ ତାଙ୍କ କାର୍ଯ୍ୟେ ।
ଆଗରେ ମାୟାହିଁ ନ ରହେ ॥
ଏ କଥା ନ ବୁଝି ପାମର ।
ଧର୍ମକୁ ନିନ୍ଦନ୍ତି ଅପାର ॥
ଗୋବିନ୍ଦ ହୋଇ ଶୁଦ୍ଧଚେତା ।
ଶୁଣିଲ ଦେବତାଙ୍କ କଥା ॥

### ଗୋବିନ୍ଦ ଉବାଚ

ଶୁଣି ଗୋବିନ୍ଦ ଅତି ତୋଷ ।
ପୁଚ୍ଛଇ ଗୁରୁଙ୍କୁ ସନ୍ଦେଶ ॥
ହେ ପ୍ରଭୁ ଯାହା ଆଜ୍ଞା ହେଲା ।
ମନରୁ ସଂଶୟ ଫିଟିଲା । ୬୦ ।
ଦେବଗଣଙ୍କ ରୀତି ଏହି ।
ଦେବୀଙ୍କ ବିଧି କି ଅଟଇ ॥

ଯେ ଅଷ୍ଟକୋଟି ଯୋଗିନୀଗଣ ।
ଏହାଙ୍କ ବିଧି କି ପ୍ରମାଣ ॥
କାତ୍ୟାୟନୀ ଆଦି ନବକୋଟି ।
ଅଛନ୍ତି ନବଦ୍ୱୀପା ସୃଷ୍ଟି ॥
କେ ପୁଣ କେଉଁ ରୂପେ ଅଛି ।
ସ୍ୱରୂପ କହ ମୋତେ ବାଛି ॥
କେତେ ପ୍ରକାରେ ଭୋଗ ରାଗ ।
ଭକ୍ଷଣେ ହେଉଛି ସଂଯୋଗ ।୭୯
ଏହା ମୁଁ ଥିବି କର୍ଣ୍ଣେ ଶୁଣି ।
ଶ୍ରୀମୁଖ ବାକ୍ୟ ବ୍ରହ୍ମବାଣୀ ॥
ଗୁରୁ ମୁଖରୁ ସିନା ପାଇ ।
ଅନ୍ୟସ୍ଥଠାରେ ନ ମିଳଇ ॥

ଅନାଦିବ୍ରହ୍ମ ଉବାଚ ।

ଶୁଣ ଭଗତ ସାମରଥା ।
ଯେ ଦେବୀ କାତ୍ୟାନୀଙ୍କ କଥା ॥
ଏ ନବ ମେଦିନୀରେ ପୂରି ।
ତିନି ଭୁବନ ଆଦି କରି ॥
ଏ ବେଦ ମୋହ ମାୟା କଲେ ।
ଜନ୍ମି ଅଛନ୍ତି ସ୍ତ୍ରୀରୂପେ ।୭୦।
ସକଳ ଗୃହେ ଦେବୀମାନେ ।
ଭୋଗାଦି କରି ଜଣେ ଜଣେ ॥
ଧରଣୀ କରି ପୁରୁଷଙ୍କୁ ।
ମାୟାରେ ଭକ୍ଷି ସେ ଅଙ୍ଗକୁ ॥
ରୁଧିର କରନ୍ତି ଆପ୍ୟାନ ।
ବପୁସ ଦେଖାଇ ନବୀନ ॥
ରୁଧିର ବିନ୍ଦୁ ବୋଲି ଜାଣି ।
ଜନ୍ମିଛି ରସ ସ୍ୱରୂପେଣ ॥
ପଦ୍ମ ଖପର ବୋଲି କହି ।
ପ୍ରକୃତି ଖଡ଼୍‌ଗେ ଛେଦଇ ॥
ଏ ରୂପେ ବଶ କରି ତାଙ୍କୁ ।
ପ୍ରାଣ ନେଉଛି ଦେଖୁଁ ଦେଖୁଁ ॥
ହେଣୁ ଶରୀର ହୋଏ କ୍ଷୀଣ ।
ରୂପଟି ଦିଶଇ ବିବର୍ଣ୍ଣ ॥
ସ୍ୱଦେହେ ଦେବୀ ଭକ୍ଷୁଅଛି ।
ଯେହ୍ନା ତଦନ୍ତେ ନ ଜାଣୁଛି ॥
ମାୟା ମୋହରେ ହେଲ ଭୋଳ
ଅଙ୍ଗରୁ ସରିଲା ସକଳ ।୮୦।
ଏରୂପେ ଶରୀରୁ ସଂସାର ।
ଗୋବିନ୍ଦ ବିଗ୍ରର ଭୁ କର ॥
କେହି ତଦନ୍ତ ଜାଣେ ନାହିଁ ।
ଖପରେ ପଡ଼ିଗଲେ ବହି ॥
ଦେବୀମାନଙ୍କ ନାହିଁ ଦୟା ।
ହରିଲେ ଦିବ୍ୟ ତନୁ କାୟା ॥

ଅଧିକେ ମନ୍ୟୁ କୁ ଦେଖାଇ ।
ପ୍ରକୃତି ଫାନ୍ଦରେ ପକାଇ ॥
ସ୍ତ୍ରୀଙ୍କ ମାୟା ଅଟେ ଜାଣ ।
ପୁରୁଷ ପୁତ୍ରଙ୍କ ପ୍ରମାଣ ।୮୫।
ମାତା ଉଷେଲ କୁମରକୁ ।
ଗୁହାରି କରିବେ କାହାକୁ ॥
ସେ ଯେବେ ମାତାରେ ଶକତା
ପୁରୁଷଠାରେ ଦୟା ଥାନ୍ତା ॥
ତଉଣ ଦିନେ ସ୍ତ୍ରୀ ସଙ୍ଗ ।
ତେବେ ରହିଲ ପୂର୍ବଅଙ୍ଗ ॥
ବୀର ଭଗତ ନୂଆ ରୂପା ।
ବୃଦ୍ଧରେ ଗୁରସ୍ତ ଭାରିଯା ॥
ଅନ୍ୟ ଦିନରେ ମାତା ସୁତ ।
ବୁଝିବେ ପ୍ରଜ୍ଞାନୀ ମହତ ।୯୦।
ଏ କଥା ନ ବୁଝି ପାମର ।
ନିତ୍ୟେ କରନ୍ତି ଉତଜ୍ୱର ॥
କେବଳ ଆପୁ କ୍ଷୀଣ ହୁଏ ।
ଅତ୍ରତୁ ସଙ୍ଗ କଲେ ଦେହେ ॥
ରାତି ଦିବସ କଲେ ରତି ।
ଏହା ନ ବୁଝି ମୂଢ଼ମତି ॥
ଏ ବୋଲ ଯେଉଁ ପ୍ରାଣୀ ବୁଝେ
ସର୍ବ ସଙ୍କଳ୍ପ ବେଗେ ତେଜେ ॥

ନ ଛନ୍ତି ଅନ୍ତର ବାହାରେ ।
ମାୟା ନ ଲାଗିପାରେ ତାରେ ॥
ନଳିନୀ ଦଳରେ ଯେସନ ।
ପାଣି ନ ଲାଗି ପାରେ ଜାଣି ॥
ଏରୂପେ ନିର୍ଗୁଣ ଭଗତ ।
ତାଙ୍କୁ ପ୍ରସନ୍ନ ଅମ୍ଭେ ସତ୍ୟ ॥
ଆହାର ଭକ୍ଷଣ କରଇ ।
ପ୍ରକୃତି ପ୍ରବଳ ନ ଥାଇ ॥
ଜଳ ଭକ୍ଷଣ ସର୍ବାଙ୍ଗରେ ।
ଇନ୍ଦ୍ରିୟ ସ୍ମରଣ ନ କରେ ॥
ଏମନ୍ତେ ଯେ ମୋର ଭଗତ ।
ତାଙ୍କ ପ୍ରସନ୍ନ ମୋର ଚିତ୍ତ ।
ନିର୍ଗୁଣ ଅଙ୍ଗ ଯେ ଅଟଇ ।
ତା ଦେହେ ବ୍ରହ୍ମ ଖେଳୁଥାଇ ।
ନୁହଇ ପାତର ଅନ୍ତର ।
ଲକ୍ଷ୍ୟନ୍ତି ଦେବା ପଞ୍ଚାନ୍ତର ॥
ଶୁଣିଲୁହିଙ୍କ ଭକ୍ତବୀର ।
ଯେ ଦେବା ଦେବୀଙ୍କ ଅଗ୍ରର ॥
ଦେହେଁ ତେଜଣ ଦେବଗଣ ॥
ଶରୀର ମଧ୍ୟେ ଥାନ୍ତି ଜାଣ ॥
ଦୁର୍ବଳ ଦେହାଟି ଅଟଇ ।
ପ୍ରକୃତି ଦୁଷ୍ଟଗଣ କହୁ ।୧୦୫।

ଜୀବନ୍ତ ଘରର ଘରଣୀ ।
ମନ୍ଦିରେ ବସିଅଛନ୍ତି ପୁଣି ॥
ଏହାଙ୍କୁ ଯେନ ରତି କର ।
ଫେଡ଼ିବେ ପାତକୁ ଏ ଶରୀର ॥
ଦେଖନ୍ତି ଦେବ କାଠ ଗଣ୍ଡ ।
ଅମୃତ ଧର୍ମଙ୍କୁ ନଇନ୍ତି ॥
ଯେ ସ୍ତ୍ରୀ ବ୍ରହ୍ମଙ୍କୁ ସେବଇ ।
ଜଗତ ଭବେ ମୋତେ ପାଇ ॥
ପୁରୁଷ ପାଦେ କରି ସେବା ।
ମାତା ପଣରେ ପାଏ ଶୋଭା ॥
ବତିଶ ଲକ୍ଷଣ ତାହାର ।
କିସ କହିବା ଭକ୍ତୀର ॥
ଏ କଳିଯୁଗେ ଅମ୍ଭେ ଉଦେ ।
ଧାଙ୍ଗା ପ୍ରକାଶ ନିରବେଦେ ॥
ଏ ଧର୍ମ ଯେ ନର ଜାଣିବ ।
ଏ କଳିଯୁଗେ ନିସ୍ତରିବ ॥

ସଙ୍ଘାତେ ବୁଦ୍ଧ ଅବତାର ।
ବଳନ୍ତି ଏ କଳିଯୁଗର ॥
ଦେବା ଦେବୀରେ କାର୍ଯ୍ୟ ନାହିଁ
ନିଷ୍କାମ ଧର୍ମ କଲେ ପାଇ ॥
ଯେ କରେ ବ୍ରହ୍ମଙ୍କୁ ଗୋଚର ।
ବହୁତ ବଳ ବୁଦ୍ଧି ତାର ॥
ଶୁଣ ସୁଜନ ମନ ଦେଇ ।
ଶ୍ରୁତିନିଷେଧ ବଖାଣଇ ॥
ନ ଜାଣି ଆଗତ ନିଗତ ।
ମନ ମୋ ଅତି ଚଞ୍ଚଳିତ ॥
ନୋହିଲି ନ ବୋଲିବ ନାହିଁ ।
ବୁଦ୍ଧି ମୋ ବାତୁଳ ଅଟଇ ॥
ରୂପ ମୋ ଅଳପ ବୟସ ।
ଶ୍ରୁତିନିଷେଧ ପରକାଶ ।୧୬୦।
ଅମରପୁରେ ଦେଇ ଚିତ୍ତ ।
ଭଣିଲେ ଭୀମ ଅଲେଖିତ ।୧୬୧।

ଇତି ଶ୍ରୀ ଶ୍ରୁତିନିଷେଧ ଗୀତା ସୁଜନଜନହିତା ଅନାଦିଗୋବିନ୍ଦ
ସମ୍ବାଦେ ଦେବାଦେବୀଚରିତକଥନେ ଗୁଣ ନିର୍ଗୁଣ
ବର୍ଣ୍ଣନେ ନାମ ତୃତୀୟୋଽଧ୍ୟାୟଃ ।

---

# ଚତୁର୍ଥ ଅଧ୍ୟାୟ

## ଗୋବିନ୍ଦ ଉବାଚ

ଗୋବିନ୍ଦ କରପତ୍ର ଯୋଡ଼ି ।
ଶ୍ରୀଗୁରୁ ପାଦତଳେ ପଡ଼ି ॥
ହେ ଗୁରୁ ବ୍ରହ୍ମାଣ୍ଡ ଠାକୁର ।
କଥାଏ ପଚାରଇ ମନର ॥
ଏ ନବଲକ୍ଷ ତାରାଗଣେ ।
କାହିଁ ପାଇଲେ କେଉଁ ଗୁଣେ ॥
ଆବର ଦିଗ ଦଶଦିଶ ।
ଏ ଧର୍ମେ କିପାଁ ଗଲେ ନାଶ ।
ପ୍ରସନ୍ନ ହୋଇ କହ ପ୍ରଭୁ ।
ବାକ୍ୟ ବଚନ କର୍ଣ୍ଣେ ଶୁଣୁ ।୫।
ତୁମ୍ଭେ ଯେ ବ୍ରହ୍ମାଣ୍ଡ କରତା ।
ଅଶେଷ ଜନ ପିତା ମାତ; ॥
ଗୁରୁବେଦକେ ନାହିଁ ଜ୍ଞାନ ।
ପୁଚ୍ଛିବି କାହା ଛାମୁରେଣ ॥
ଗୁରୁ ଯେ ପିଣ୍ଡକୁ କାରଣ ।
ଜୀବର ମୁକତି ଧାରଣ ॥
ଏ ଜୀବ ଉଦ୍ଧାର ନିମନ୍ତେ ।
ଆଶ୍ରୟ ଗୁରୁ ପାଦଗତେ ॥
ଗୁରୁ ପ୍ରସନ୍ନେ ଜ୍ଞାନ ପାଇ ।
ନୋହିଲେ ତରିବେ ସେ କାହିଁ ॥
ନିର୍ଣ୍ଣୟ କହ ତଥ୍ୟ କରି ।
ଅରୂପ ଗୁରୁ ବ୍ରହ୍ମ ହରି ॥

## ଅନାଦିବ୍ରହ୍ମ ଉବାଚ

ଶୁଣ ଗୋବିନ୍ଦ ଶୁଦ୍ଧଚେତା ।
ସେ ନବ ଲକ୍ଷ ତାରା କଥା ॥
ଆଜ୍ଞାରେ ହୋଇ ଉଦେ ଅସ୍ତ ।
ବ୍ରହ୍ମ କର୍ମରେ ନାହିଁ ତତ୍ୱ ॥
ଆକାଶମଣ୍ଡଳରେ ପୁଣ ।
ଯାର ତପସ୍ୟା ଯେତେ ଦିନ ॥
ଆଜ୍ଞାରେ ହୋଇ ଉଦେ ଅସ୍ତ ।
ବ୍ରହ୍ମ କର୍ମରେ ନାହିଁ ତତ୍ତ୍ୱ ॥
କଳ୍ପଣା କାମନା ସେ ଫଳ ।
ବର ବାଞ୍ଛିତ ଅର୍ଥେ ଭୁଲ ॥
ତେଣୁ ସେ ଆକାଶେ ଅଛନ୍ତ ।
ଯାହାର ଜନ୍ମ ଯେଉଁ ମତ ॥

ଧନ୍ୟ ମହିମା ନାମ ଭକ୍ତ ।
ସକାମ ହୃଗୁଣଙ୍କୁ ତେଜ ॥
ତେଣୁ ଅକାଶ ମଧ୍ୟେ ବାସ ।
ହେନ ଆପଣା ନିଜ ଅଂଶ ॥
ସମସ୍ତେ ଶୂନ୍ୟ ଅନ୍ୱେଷେ କଲେ ।
ଶୂନ୍ୟ ଭୁବନେ ଶୂନ୍ୟ ହେଲେ ॥
ତେଣୁହି ପୁଷ୍ପକ ବିମାନ ।
ଚନ୍ଦନ ସିଂହାସନ ଜାଣ ॥
ତହିଁରେ ଚଢ଼ି ଭ୍ରମୁଛନ୍ତି ।
ଉଦେ ଅସ୍ତରେ ଉଡ଼ୁଛନ୍ତି ॥
ଧାର୍ମିକ ଧର୍ମ ରକ୍ଷା କରେ ।
ଯେ ସତ୍ୟ ବାକ୍ୟ ଉଚ୍ଚାରେ ॥
ତେଣୁ ସେ ଛନ୍ତି ଅକାଶରେ ।
ସ୍ୱଧର୍ମ ପୁଞ୍ଜାମୀ ଅଗ୍ରରେ ॥
ତେଣୁ ଅକାଶେ ଉଡ଼ୁଛନ୍ତି ।
ଅଜ୍ଞାରେ ପ୍ରବୃର ହୁଅନ୍ତି ॥
ତପେ ବଚନ ଧରିପାରେ ।
ଅଛି ସେ କଳ୍ପ କଳ୍ପାନ୍ତରେ ॥
ଯେମାନେ ଅଜ୍ଞା ଦିଅନ୍ତି ଛଡ଼ି ।
ରବିତଳରେ ଛଡ଼ାପଡ଼ି ॥
ତେଣୁ ତାହାଙ୍କ ତପ ଭଙ୍ଗ ।
ନାହିଁଟି ଶୁଭାଶୁଭ ଅଙ୍ଗ ॥

ସେହିଟି ଯୁଗ ଅନୁକୂଳ ।
ଲଗ୍ନରେ ହୋଇ ଫଳାଫଳ ॥
ସେ ଯେବେ ନ ଥାନ୍ତେ ଶୂନ୍ୟରେ
ଘଡ଼ି ଗଣନ୍ତେ କି ପ୍ରକାରେ ॥
ଶୁଭାଶୁଭରେ ସେହୁ ସକ୍ଷୀ ।
ପଣ୍ଡିତେ ଶାହାସ୍ତ୍ରରେ ଲେଖି ॥
ତେଣୁ ଜାଣନ୍ତି ଘଡ଼ି ବେଳା ।
ନବଗ୍ରହଙ୍କ ନବହିଲା ।
ତେଣୁ ହୋଇଲା ଦିବା ରାତ୍ର ।
ଯେ ଶୁଭ ଅନୁକୂଳ ସ୍ଥିତ ॥
ଦିବସ ରଜନୀ ତାଙ୍କର ।
ଦଣ୍ଡେ ମୁହୂର୍ତ୍ତେ ନାହିଁ ପାର ॥
ତାଙ୍କ ବୟସ ସଙ୍ଗେ ତାଙ୍କୁ ।
ସକାମେ ଲେଖି ସେମାନଙ୍କୁ ॥
ରକ୍ଷନା ରୂପ ହୋଇଛନ୍ତି ।
ଜୁଳା କୀଟର ପ୍ରାୟେ ଜ୍ୟୋତି ॥
ତେଣୁହି ଅଲୁଅ ଅକାଶ ।
ଶୋଭା ପାଉଛି ଦଶଦିଶ ॥
ନୋହିଲେ ଅନ୍ଧାର ହୁଅନ୍ତା ।
ଦିବା ରଜନୀ ନ ବାରନ୍ତା ॥
ସର୍ବେ ସେ ଅକାଶେ ଅଛନ୍ତି ।
ନିଷ୍କାମ ଲଭ ନ ପାରନ୍ତି ॥

ନିର୍ଗୁଣ ହୋଇ ଯେଉଁ କଥା ।
ଅମୃତ ଅବ୍ୟୟ ଅଶ୍ରୁତା ।୪୦।
ବ୍ରହ୍ମେ ନୋହିଲେ ଯେଣୁ ଲକ୍ଷ ।
ତେଣୁଟି କାଠ ଗଲେ ଦେଖ ॥
ଯେବେ ବହୁତ କର୍ମ ସେହି ।
ବ୍ରହ୍ମରେ ଲକ୍ଷ୍ୟ ସେ ନୁହଇ ॥
ନିର୍ବେଦ ବୋଲି ଯେଉଁ ନାମ ।
କବି ପଣ୍ଡିତେ ହୋନ୍ତି ଭ୍ରମ ॥
ଅମନ ମନ୍ଦର ଅନଳ ।
ମନ ତହିଁକ ପରଶେ ନାହିଁ ॥
ଏତେ ପ୍ରକାରେ ଭକ୍ତ ବୀର ।
ଶୁଣ ଗୋବିନ୍ଦ ଦାମୋଦର ।୪୫
ନିଷ୍କାମ ଧର ନ ପାଳିଲେ ।
ତେଣୁ ସେମାନେ କାଠ ଗଲେ ।
ଜାଣି ସେ ନ ଜାଣିଲ ପ୍ରାୟେ ।
ଗୁରୁ ଅଜ୍ଞାକୁ ନାହିଁ ଭୟେ ॥
ତେଣୁହି ତାହାଙ୍କ ପ୍ରାକର୍ମ ।
ହରିଲେ ଗୁରୁ ଦେବ ବ୍ରହ୍ମ ॥
ତେଜକୁ ଛଡ଼ାଇ ଅଣିଲେ ।
ନିଜ ଅଙ୍ଗରେ ସମ୍ପାଦିଲେ ॥
କୋଟିଏ କଳା ଯେନ ପ୍ରଭୁ ।
ବଳପ୍ୟେ ଅଭୟ ସ୍ୱରୁ । ୫୦ ।

ବୈଷ୍ଣବ ଅବତାର ହୋଇ ।
ଅଶେଷ କଳା ଅଙ୍ଗେ ବହି ॥
ତେଣୁ ସେ ନ ଗଣି କାହାକୁ ।
ଆପେ ବଳପ୍ୟେ ଏ ମର୍ତ୍ତ୍ୟକୁ ॥
ତାହାଙ୍କ ଅଗାଧ ମହିମା ।
କେ ବୁଝି ପାରେ ଗୁଣ ସୀମା ॥
ସିନ୍ଧୁ ପର୍ଯ୍ୟେ ବ୍ରହ୍ମ ଯେହି ।
ତଦନ୍ତେ କହିତ ନୁହଇ ॥
ଯେ ବ୍ରହ୍ମେ ବ୍ରହ୍ମ ହୋଇପାରେ ।
ତାଙ୍କ ମହିମା ସେ ଉଚ୍ଚାରେ ॥
ନୋହିଲେ ଚନ୍ଦ୍ର ସୂର୍ଯ୍ୟ ବଶ ।
କେ ଅବା କରୁଛି କଲଣା ॥
ଶୁଣିଲୁ ଟିକି ଏ ଭଗତ ।
ତାତ୍ୱିଦ ଗଣ ଭାଗବତ ॥

### ଗୋବିନ୍ଦ ଉବାଚ

ହେ ପ୍ରଭୁ ଭଲ ତ କହିଲ ।
ଚନ୍ଦ୍ର ସୂର୍ଯ୍ୟଙ୍କୁ କାଟି ଦେଲ ॥
ବ୍ରହ୍ମାଣ୍ଡ ଦୀପ ଯେ ଅଟନ୍ତି ।
ରାତ୍ରି ଦିବସ ଖଟୁଛନ୍ତି ॥
ନୋହିଲେ ପୃଥ୍ୱୀ ଅନ୍ଧକାର ।
କେ ଅବା କରନ୍ତା ଗୋଚର ॥

ରାତ୍ରକେ ଦିବସ ଗୋଟିଏ ।
ତେଣୁ ତ୍ରିପୁର ଶୋଭାପାଏ ॥
ଏଥି ନୋହିଲେ ଉଦେଇଅସ୍ତ ।
ରାତ୍ର ଦିବସରେ ଏକାନ୍ତ ॥
ଉଦୟ ଅସ୍ତ ପ୍ରତିଦିନ ।
ଏମାନେ ନ ଚିହ୍ନନ୍ତି ଜ୍ଞାନ ॥
ଅଟନ୍ତି ପୃଥୀଙ୍କି ଧାରଣି ।
ନେମନ୍ତେ ନ ଜାଣିବା ପୁଣି ॥
ଭୋ ପ୍ରଭୁ କହି ତଥ୍ୟ କରି ।
ଆଗମ ନିଗମ ବିସ୍ତରି । ୬୫ ।

ଅନାଦି ବ୍ରହ୍ମ ଉଚ୍ଚାର

ଶୁଣି ଗୋବିନ୍ଦ ହେତୁ ଦେଇ
ଶୁଦ୍ଧ ନିଷେଧ କହୁଁ ଫେଇ ॥
ଯେ ଚୂଳଶୂନ୍ୟ ଆଦି ପୁର ।
ତେଜ ପଡ଼ୁଛି ତାହାଙ୍କର ॥
ବାୟୁ ଭୁବନ ଯେ ଆକାଶ
କିରଣ ହେଉଛି ପ୍ରକାଶ ॥
ମୃତ୍ତିକା ଧ୍ରୁବର ମଣ୍ଡଳ ।
ବିରାଟ ମହାବିରାଟ ମୂଳ ॥
ବ୍ରହ୍ମା ଭୁବନ ଦେବପୁର
ତେଜ ପଡୁଛି ତାହାଙ୍କର ।୭୦।
ଏ ଯେ ଚନ୍ଦ୍ରଙ୍କର ମଣ୍ଡଳେ ।
ତେଜ ପଡ଼ୁଛି ଶାଖାନଳେ ॥
ଅବର ଛଡ଼ାଦି ଯେ ପୁରୀ ।
କିରଣେ ରହିଛି ଅବୋଘ ॥
ପଞ୍ଚାଳି ପୁର ଅଦିଯାଧ୍ୟେ ।
ପ୍ରକାଶି ଅଛି ତେଜ ମଧ୍ୟେ ॥
ଏ ନବଖଣ୍ଡ ଯେ ମେଦିନୀ ।
ଅବର ସପ୍ତ ଦ୍ଵିକ୍ ପାଣି ॥
ଯେଉଁ ସୀମାରେ ଚନ୍ଦ୍ର ସୂର୍ଯ୍ୟ ।
ଲାଗି ରହିଛି ତାଙ୍କ ତାଙ୍କ ତେଜ
ଏଥିକି ସିନା ସେ ଜାଣନ୍ତି ।
ଆଗକୁ ଗମି ନ ପାରନ୍ତି ॥
ଯେଣୁ ଆକାରେ ହେଲେ ମେଳ ।
ଡୁବିଲେ ଚନ୍ଦ୍ର ସୂର୍ଯ୍ୟ କୁଳ ॥
ନିଗମେ ପଶି ନ ପାରିଲେ ।
ଉଦୟେ ଅସ୍ତରେ ରହିଲେ ॥
ନିଗମ ବୋଲି ଯେଉଁ ନାମ ।
ତହିଁ ନ ପଶେ ପାରେ ଯମ ॥
ଜନ୍ମ ମୃତ୍ୟୁ ଯେ ତହିଁ ନାହିଁ ।
କାଳହିଁ ପଶି ନ ପାରଇ ।୮୦।
ଏମନ୍ତେ ଅଟେ ସେହିବନ ।
ଗୋବିନ୍ଦ ତତ୍ତ୍ଵ କରି ଜାଣ ॥

ଏକୋଇଶ ବ୍ରହ୍ମାଣ୍ଡର ଭୂଇଁ ।
ଆଗକୁ ନ ପାରିଲେ ଯାଇ ॥
ତେଣୁ ସେମାନେ କାଠ ଗଲେ ।
ଗୋବିନ୍ଦ ବୁଝି ଏଡ଼ାଇଲେ ॥
ଜଗତେ ବୋଲିବେ ସ୍ୱେ ମନ୍ଦ ।
ନ ଜାଣି ବେଦମାର୍ଗ ଛନ୍ଦ ॥
ଚନ୍ଦ୍ର ସୂର୍ଯ୍ୟହିଁ ନ ଜାଣନ୍ତି ।
ନର ମାନବେ କାହିଁ ଶକ୍ତି ॥
ବଡ଼ମା କହୁଛନ୍ତି ପ୍ରାଣୀ ।
ତଥ୍ୟରେ ବ୍ରହ୍ମକୁ ନ ଚିହ୍ନି ॥
ବ୍ରହ୍ମ କର୍ମଟି ଯେ ଆମ୍ଭର ।
ନ ଥାଇ ଆକାର ବିକାର ॥
ଅଜ୍ଞାନ ଅଣଜ୍ରତ ଦେହୀ ।
ତାହାର ଆଦିଅନ୍ତ ନାହିଁ ॥
ଏରୂପେ କୋଟି କଳ୍ପ ଗଲା ।
କାହାକୁ ଚିହ୍ନିତ ନୋହିଲା ॥
ଏବେ ଗୋବିନ୍ଦ ଲିପ୍ତ କର ।
ଜନ୍ମ ମରଣୁଁ ହେବୁ ପାର ।୧୦।
ହୁଅ ତୁ ଦିଗମ୍ବର ବାସୀ ।
ଶ୍ରୀଗୁରୁ ପାଦରେ ନିବେଶି ॥
କ୍ରିୟା କର୍ମମାନ ଛାଡ଼ି ।
ନିତ୍ୟେ ଅଭ୍ୟାସ କର ଦୃଢ଼ ॥

ହେତୁ ରହିଲା ଯୁଗେ ଯୁଗେ ।
ନ ଯିବୁ ଜନ୍ମ ମୃତ୍ୟୁ ଭାଗେ ॥
ଏରୂପେ କୋଟି କଳ୍ପ ଗଲା ।
କାହାକୁ ଚିହ୍ନାତ ନୋହିଲା ॥
ଏରୂପେ କୋଟିକଳ୍ପ ଗଲା ।
କେହି ଧରିତ ନ ପାରିଲା ॥
ସ୍ୱେତେବେ ମୁଁ କହୁଅଛି ତୋତେ ।
ସଂସାରୁ ତରିବୁ ଯେମନ୍ତେ ।୧୫।
ପିଣ୍ଡ ପ୍ରାଣକୁ ଦାନ ଦେଇ ।
ନିର୍ବେଦ ପଣିବ ଝୁମାଇ ॥
ଅବର ଧର୍ମ କର୍ମ ମାନ ।
ଚରଣେ କର ସମର୍ପଣ ॥
ପିଣ୍ଡକୁ ଆଶା ନ କରିବୁ ।
ମୃତ୍ୟୁ ପର୍ଯ୍ୟନ୍ତେ ଗ୍ରହିଁ ଥିବୁ ॥
ହୃଦରେ ନ ଥିଲେ କଳ୍ପଣା ।
ସତ୍ୟରେ ନୋହିବୁ ତୁ ବଣା ॥
ଆମ୍ଭେ ଟି ଅଟୁ ସଦଗୁରୁ ।
ବାକ୍ୟ ତୁ ଶୁଣ ଅମ୍ଭଠାରୁ ॥
ଯେ ପ୍ରାଣୀ ଧର୍ମକୁ ଲଙ୍ଘନ୍ତି ।
ଅଳପ ଦିନେ ନାଶ ଯାନ୍ତି ॥
ଲଙ୍ଘିଲେ ଶ୍ରୀଗୁରୁ ବଚନ ।
ତ୍ରିପୁରେ କାହିଁ ତାକୁ ଥାନ ॥

କୁମ୍ଭୀ ନର୍କରେ ତାଙ୍କ ବାସ ।
ଆମ୍ଭେ ନ ଯାଉ ତାର ପାଶ ॥
ତା ଦ୍ୱାର ନାହିଁ ମୁକ୍ତି ଯୋଗ ।
ଜୀବ ଥାଆନ୍ତେ ମୃତୁ ଶବ ॥
ସ୍ୱରୂପ କହିଲୁ ଗୋବିନ୍ଦ ।
ଧର ତୁ ସର୍ବ କର୍ମ ଛେଦ ॥
ନେତ୍ର ପଲକ ଅଛି ଛିଦ୍ର ।
ସେ ତାରା ନବଲକ୍ଷ ଗଣ ॥
ପଶ୍ଚିମ ଦିଗ ଯାକୁ କହି ।
ଦୃଷ୍ଟି ଭାଗଟି ସେ ଅଟଇ ॥
ଦକ୍ଷିଣ ଭାଗ ଯେନ୍ତୁ ଦେଖ ।
ଡାହାଣ କରକୁ କହିଲ ॥
ଉତ୍ତର ଦିଗ ଯାହା କହି ।
ବାମ ଅଙ୍ଗଟି ସେ ଅଟଇ ॥
ପୂର୍ବ ଦିଗଟି ମୁଖ ବନ୍ଦ ।
ଲେଉଟି ଦୂଧା ମକରନ୍ଦ ।୧୧୦।
ଦଶ ଦିଗଟି ଯାହା କହି ।
ଦଶ ଇନ୍ଦ୍ରିୟ ସେ ବୋଲଇ ॥
ଚନ୍ଦ୍ର ସୂର୍ଯ୍ୟଟି ଯେନ୍ତୁ ଦେଖ ।
ଏ ବେନି ନେତ୍ରକୁ କହିଲ ॥
ସମୁଦ୍ର ଶବ୍ଦାର୍ଥେ ଜାଣି ।
ବାଦ୍ୟେ କାଟିବ ପରମାଣି ॥
ଏହା ତୁ ଶୁଣ ହେ ଗୋବିନ୍ଦ ।
ସୁମରି ଗୁରୁ ପାଦବନ୍ଦ ॥
ସଜ୍ଜନେ ସାବଧାନେ ଶୁଣି ।
ମୁଁ ଅଟେ ମୂରୁଖ ଅଗ୍ୟାନ ॥
କେହି ମୋ ନାହିଁ ବଳ ସାହା
ଶ୍ରୀଗୁରୁ ସ୍ୱାମୀ ମୋର ସାହା ॥
ପାଠ ଶାସ୍ତ୍ର ନାହିଁ ପଢ଼ି ।
ଗୋଷ୍ଠେ ମେଳକୁହିଁ ନ ଗଢ଼ି ॥
ନ ଜାଣେ ପାପ ପୁଣ୍ୟ କଥା ।
ନାହିଁ ମୋ ସଦ ବୁଦ୍ଧି ଚେତା ॥
ମୂରୁଖ ପ୍ରାଣୀ ପଦ ଅର୍ଥ ।
ଅକ୍ଷର ଧାରି ନାହିଁ ଯତ ॥
ଜ୍ଞାନ ଧ୍ୟାନ ମୁଁ ନ ଜାଣଇ ।
ଅଜ୍ଞାନ ପାମର ଅଟଇ ।୧୨୦।
ଶୂନ୍ୟ ବ୍ରହ୍ମକୁ କର ଦୃଢ଼ ।
ଭଣେ ପାମର ଭୀମ ମୂଢ଼ ॥

ଇତି ଶ୍ରୁତିନିଷେଧ ଗୀତା ନିଜନଜନହନ୍ତା ଅନାଦିଗୋବିନ୍ଦ
ସମ୍ବାଦେ ନବଲକ୍ଷତାରାଦିନନ୍ତଣ୍ଡିପ୍ର ଚରିତ
ବର୍ଣ୍ଣନେ ନାମ ଚତୁର୍ଥୋଽଧ୍ୟାୟଃ ।

# ପଞ୍ଚମ ଅଧ୍ୟାୟ

## ଗୋବିନ୍ଦ ଉବାଚ

ଶୁଣ ଗୋବିନ୍ଦ ମନେ କୃତ ।
ସ୍ୱପ ତ ସାଗର ତରଙ୍ଗ ॥
ଆନନ୍ଦ ମନେ ପ୍ରଶଂସିଲା ।
ଶ୍ରୀଗୁରୁ ପାଦେ ପ୍ରଣମିଲା ॥
ପ୍ରଣାମ କରି ଶତେବାର ।
ହେ ଗୁରୁ ବ୍ରହ୍ମାଣ୍ଡ ଠାକୁର ॥
ମନେ ଅପ୍ରତେ ଥିଲା ଯେତେ ।
କର୍ଣ୍ଣରେ ଶୁଣି ଗଲା ପ୍ରତେ ॥
ଆନ୍ତର କଥା ଏକ ଅଛି ।
ପ୍ରଭୁ ଗ୍ରନ୍ଥରେ ପଚାରୁଛି । ୫ ।
ତୁଳସୀ ବୃକ୍ଷର ବିଧାନ ।
କହ ଏହାର ନିଜ ନାମ ॥
ବୃକ୍ଷଙ୍କ ମଧ୍ୟେ ଏହୁ ଶ୍ରେଷ୍ଠ ।
ଶପାଁଇ ଧର୍ମେ ଗଲେ କାଠ ॥
କେତେକ ଏହାର ଉତ ନୀତ ।
କହ ନିର୍ଣ୍ଣୟ କର ବାତ ॥
ଅନେକ ଲୋକେ ସେ ବାଞ୍ଛନ୍ତି
ମୁକତି ପାଇବୁ ବୋଲନ୍ତି ॥
ସେବା ଭଗତ କରି ତାକୁ ।
ଧରି ସେ କ୍ରିୟା କରମକୁ ॥
ଆବର କଣ୍ଠରେ ପକାଇ ।
ଜପ କରନ୍ତି ମନ୍ତ୍ର ଗାଇ ॥
ତରିବୁଁ ବୋଲି ଭକ୍ତ ଜନ ।
କରିଅଛନ୍ତି ବନ୍ଧୁ ମାନ୍ୟ ॥
ଏ କଥା ହୋଇବ କେମନ୍ତ ।
ତନ୍ତ୍ର ଏହାର ଆଦ ଅନ୍ତ ॥
କର୍ଣ୍ଣରେ ଶୁଣିଥିଲି ମୁହିଁ ।
ଗୁରୁ ବଚନରେ ଜଣାଇ ॥

## ଅନାଦିବ୍ରହ୍ମ ଉବାଚ

ଶୁଣ ଭଗତ ସାଧୁଚେତା ।
ତୁଳସୀ ବୃକ୍ଷ ଆଦ କଥା ॥
ବୈକୁଣ୍ଠ ଭୁବନରେ ଜାଣ ।
ସେ ଆଦିକନ୍ଦ ନାରାୟଣ ॥
ନାରିକାଙ୍କ ସେବା କରି ।
କଷ୍ଟ ଦିନରେ ନରହରି ॥

ଦେହ ଛାଡ଼ିଲେ ଏହି ମର୍ତ୍ତ୍ୟ ।
ଗଲେ ବୈକୁଣ୍ଠ ପୁର ପଥେ ॥
ମାନବ ବସ୍ତ୍ର ଯାଉଛନ୍ତି ।
ସ୍ୱର୍ଗେ ଗନ୍ଧର୍ବେ ଜଗିଛନ୍ତି ॥
ଯେ ପଥ ବଡ଼ାଇ ଅକାଠ ।
ବସ୍ତ୍ରଙ୍କୁ ନ ଛାଡ଼ିଲେ ବାଠ ॥
ତୁଳସୀ ବିପୁଲ୍ଲ ସୁନ୍ଦରୀ ।
ଆଣି ବସ୍ତ୍ରଙ୍କୁ ନେଲା ବର ॥
ବୈକୁଣ୍ଠ ଭୁବନେ ପ୍ରବେଶ ।
ଦେଖି କୋପିତ ସେ ପୁରୁଷ ॥
ମାନବ ବସ୍ତ୍ର ଅଛି ଏହି ।
ଏଠାକୁ ଆଣିଲୁ କପାଇଁ ॥
ଆମ୍ଭର ଶାପ ତୁହି ଧାଅ ।
ବିଯୁ ପାବଛି ତଳେ ଥ ଅ ॥
ସେ ବସ୍ତ୍ର ବ୍ରହ୍ମେ ଲୀନ ହେଲା ।
ତଳରେ ବିପୁଲ୍ଲ ରହିଲା ॥
ସତ୍ୟଯୁଗରେ ସତ୍ୟବତୀ ।
ତ୍ରେତୟାଯୁଗରେ ମାଳତୀ ॥
ଦ୍ୱାପରଯୁଗେ ବୃନ୍ଦ ବତୀ ।
ବୃସ୍ତ୍ର କବେ ସେ ଯୁବତୀ ॥
ଏ କଳି ଯୁଗରେ ତୁଳସୀ ।
ନାମ ତା ବୃକ୍ଷରୂପେ ବସି ॥

ଗୋବନ୍ଦ ଏ କଳିଯୁଗରେ ।
ତାଙ୍କୁ ରୁପିଲେ ଦ୍ୱାରେ ଦ୍ୱାରେ
ତୁଳସୀ ସେବା ନ ଜାଣିଲେ ॥
ସେବାରେ ଦ୍ରୋହକାରୀ ହେଲେ
ବିପୁଲ୍ଲ ମାତା ତାଙ୍କୁ ବୋଲି ।
ବି ବେଢ଼ା ବୃଲ୍ଲ ଜଳ ଢାଳି ॥
ଶିରେ ଢାଳିଲେ ନେଇ ଜଳ ।
ବହି ଆସିଲା ତାର ମୂଳ ।
ଧାଦ ଉଦକ ଯେନ ଥୋକେ ।
ଭକ୍ଷଣ କର ନିଜ ମୁଖେ ॥
ସେ କଥା ଉଚିତ ପ୍ରମାଣ ।
ଆଦର କଲେ ବିଭୀଷଣ ॥
ପୁଷ୍ପ ପତ୍ରକୁ ତା ଛିଣ୍ଡାଇ ।
ଛାଗଳ ପତ୍ରଏ ଗୈବାଇ ॥
ଛାଗଳ ଯେବେ ଚରେ ପତ୍ର ।
ଅଙ୍ଗ ତା କଟିଲ ଛିନଛିନ୍ନ ॥
ବସ୍ତ୍ର ପତ୍ରଏ ସେବା କଲେ ।
ତା ହସ୍ତ ଗୋଡ଼ ଛିଣ୍ଡାଇଲେ ॥
ଭକ୍ଷିଲେ ତୁଣ୍ଡରେ ପୁରାଇ ।
ଚମ୍ପିଲେ ଦନ୍ତରେ ଲଗାଇ ॥
ଦେଖି ବହୁତ ହେଲା କ୍ରୋଧ ।
ଶୁଣ ତୁ ଅବଧୂତ ପୁଅ ॥

ମୁଖେ ଭକ୍ଷଣ ତାକୁ କଲେ ।
ଗୁହ୍ୟ ଦୁଆରେ ଉଦ୍ଗାରଲେ ॥
ସେ ଅଟେ ବଷ୍ଣୁଙ୍କ ଘରଣୀ ।
ଧର୍ମରେ ହୋଇଲା ସେ ହାନ ॥
ତେଣୁ ହୋଇଲେ ମହାପାପୀ ।
ତୁଳସୀ ଗୃହେ ଗୃହେ ରୂପି ॥
ତା ସେବା ଭକ୍ତି ନ ଜାଣିଲେ ।
ଅନ୍ୟ ପ୍ର ମତ ଆଚରଲେ ॥
ସର୍ବେ ଚଳଲେ ସେହି ପଥେ ।
ଶାଠର କର୍ମର ସହିତେ ॥
ବେଦ ବଚନ ନ ମାନଲେ ।
ବହିତ କର୍ମ ନ ଗୃହିଲେ ।
ଯହାଙ୍କୁ ଯେହ୍ନେ ସେବଥାଇ ।
ଆଗୁଁ କ ମାଂସ କାଟି ଖାଇ ॥
ପଯୂର ଅଙ୍ଗୁଷ୍ଠି ତାହାର ।
ଛେଦଲେ ଦୋଷହିଁ ଅପାର ॥
ଶୁଣ ଗୋବନ୍ଦ ଦାସ ବାବା ।
ଅତଥ ଯେମନ୍ତେ ପୂଜିବା ॥
ପାଦ ଉଦକ ଯେବେ ପାଇ ।
ସେ ପ୍ରାଣୀ ମୁକତି ଲଭଇ ॥
ପିତ୍ର ପରଶି ସେନା ଧର୍ମ ।
ତେଣୁଟି ଫଳ ଯାଏ ପୂର୍ଣ୍ଣି ।୫୦।

ତୁଳସୀ ବୃକ୍ଷ ଯାକୁ କହି ।
ଜାଣ ତୁ ସ୍ତ୍ରୀଶ ସେ ଅଟଇ ॥
ତାକୁ ସେବଲେ ଧର୍ମ ଗତ ।
ନ ଦେଇପାରେ ଚିତ୍ତ ମୁକ୍ତି ॥
କେବଳ ସେବା ବଧମତ ।
ଧର୍ମ ତା ଅଟେ ଫଳଶ୍ରୁତ ॥
ଗୋବନ୍ଦ କର ତୁ ବବେକ ।
ତୁଳସୀ କହି ଯେଉଁ ବୃକ୍ଷ ॥
ତୁ ଯେବେ ପଣ୍ଡିତଲୁ ମୋତେ ।
ଯେଉଁ ମୁଁ କହିଦେବ ତୋତେ ॥
ତୁଳସୀ ବୃକ୍ଷ ଯାହା କହି ।
ଓଲଟ ତରୁ ସେ ବୋଲାଇ ॥
ମାତାର ରଜ ଏକ ରତି ।
ପିତାର ବୀଜ ଦୁଇ ରତି ॥
ତିନ୍ନି ବୀଜଟି ବୋଲାଇଲା ।
ତ୍ରିପୁର ବ୍ରହ୍ମାଣ୍ଡ ରଚିଲା ॥
ତ୍ରିଗୁଣ ସତ ରଜତମ ।
ତିନ୍ନି ଦେବନ୍ତି ବୋଲି ଜାଣ ॥
ସେ ତିନି ଏକ ଅଙ୍ଗ ହେଲେ ।
ତ୍ରିପୁରା ନାମହିଁ ବହିଲେ । ୬୦ ।
ତିନି ପୁରକୁ ତିନି ଦେବ ।
ସର୍ଜନା ସଦେ ହେଲେ ଯୋଗ୍ୟ ॥

ଶୁଣ ଗୋବିନ୍ଦ ମନେ ଚେତ ।
ମାତାର ରକ୍ତ ଛଡ଼ଗତ ॥
ପିତାର ବାର ରତ ହେଲା ।
ଉଷାଙ୍କ ଜଳରେ ମିଶିଲା ॥
ଛଡ଼ ରତ ଯେ ଏକ ବିନ୍ଦୁ ।
ସେ ବୋଲାଇଲା ସପ୍ତବିନ୍ଦୁ ॥
ଆଉ ଏଗାର ଭାଗ ଥିଲା ।
ତହିଁରୁ ଭଗେ ଲୀନ ହେଲା ।୬୫
ତହିଁକ ଦଶଭାଗ କହି ।
ଦଶମ ପୁଷ୍ପ ଯେ ବୋଲାଇ ॥
ତୁମ୍ଭେ ଶୁଣିବରେ ବାପା ।
ତୁଳସୀ ବୃକ୍ଷ ହେବ ଯେ ଲେଖା ॥
ଗର୍ଭରେ ରକ୍ତ ଜନମିଲା ।
ଚଉଦ ରତ ବୋଲାଇଲା ॥
ପିତାର ବୀଜ ନଅ ରତ ।
ମିଶି ଏକାଙ୍ଗ ବର୍ଣ୍ଣ ମୂର୍ତ୍ତି ॥
ସେ ମୂଳ ଚଉଦ ରତରେ ।
ତୁଲ ସେ ଧର୍ମ ନକ୍ଷତ୍ରରେ ।୭୦।
ବୀଜ ତିରିଶ ଭାଗ କହି ।
ରକ୍ତ ବତିଶ ଭାଗ ହୋଇ ॥
ତିରିଶ ବତିଶ ମିଶାଇ ।
ତୁଳିଲା ନକ୍ଷତ୍ରରେ ନେଇ ॥
ରକ୍ତ ପଚିଶ ଭାଗ ହେଲା ।
ବିନ୍ଦୁ ଶୂନିଶ ଭାଗ ହେଲା ॥
ତୁଳିଲା ଧର୍ମ ନକ୍ଷତ୍ରରେ ।
ମିଶାଇ ଏକାନ୍ତ ଭାବରେ ॥
ତହୁଁ ହୋଇଲା ବହୁ ଉଣା ।
ସେ ପୁଣି ନ ପଡ଼ିଲା ଜାଣା ।୭୫।
ଶୁଣ ଗୋବିନ୍ଦ ମନ ଦେଇ ।
ଅପୂର୍ବ ଚରିତ୍ର ଏହି ॥
ପଦ୍ମରୁ ରକ୍ତ ଜନମିଲା ।
ଶାଠିଏ ରତ ଭାଗହେଲା ॥
ଶୂନିଶ ମୂଳ ଭାଗ ବୀଜ ।
ପକାଇ ନକ୍ଷତ୍ରରେ ରଜ ॥
ଉଣା ସେ ହୋଇଲା ତହିଁରୁ ।
ତୁଳା ତଉଲ କରୁ କରୁ ॥
ରକ୍ତ ଉଷାଙ୍କ ଲତା ମାର୍ଗ ।
ବଳିଲା ଚଉଷଠି ଭାଗ । ୮୦ ।
ଶାଠିଏ ଶୂର ଭାଗ ହେଲା ।
ଡାହାଣ ନକ୍ଷତ୍ର ପୂରିଲା ॥
ଶୂନ୍ୟାଦି ମଣ୍ଡଳରୁ ବ୍ରହ୍ମ ।
ଅକାରେ ଧରି ନିଜଧର୍ମ ॥
ସେଠାରୁ ଅଷ୍ଟ ଭାଗ ଅଛି ।
ବୀଜ ଭାଣ୍ଡରେ ଯାଇଁ ମିଳି ॥

ପବନ ଫଲ୍ୟୋଢ ପୁରଢ ।
ଖାଜ ଚୌଷଠି ଭାଗ ରଢ ॥
ଯହିଁ ସେ ପଞ୍ଚମୂର୍ତ୍ତି ହୋଇଲେ ।
ବାମ ନିକଟ ସେ ଦୂରିଲେ । ୮୫ ।
ଧର୍ମ ନିକଟରେ ଭୁକିଲେ ।
ରଜ ଖାଜକୁ ମେଘ:ଇଲେ ॥
ଭୁଲ ପାଳରେ ତାକୁ ଜପି ।
ଗଢିଲା ବସି ଦ୍ୱବାନନ୍ଦି ॥
ଏ ପିଣ୍ଡ ଜାତକ ବଗ୍ଭର ।
ବଣାଣ ଏ ଅଷ୍ଟ ଉତ୍ତର ॥
ତୁଳସୀ ବୃକ୍ଷ ସେ ହୋଇଲା ।
ଏ ନାମ ଦେହକୁ କହିଲେ ॥
ଏ ପ୍ରକାରେ ତୁଳସୀ ବୃକ୍ଷ ।
ଗୋବନ୍ଦ କର ତୁ ବବେକ ।୯୦।
ଖାଜ ରଜକୁ ତୁଳ ନେଲା ।
ତୁଳସୀ ବୃକ୍ଷକୁ ରୋପିଲା ॥
ଏହି ବୃକ୍ଷକୁ ସେବା କର ।
ବଅର୍ଥେ ଭ୍ରମି ତୁ ନ ମର ॥
ତାକୁ ସେବିଲେ ଫଳ ପାଇ ।
ଗଢ ମୁକତହି ଲାଗଇ ॥
ଏହି ମାର୍ଗରେ ପୁଣ୍ୟ ଅଛି ।
ଅନ୍ୟରେ ନ ପାଇବ କିଛି ॥

ଯେ ବୃକ୍ଷ ଶ୍ରୀଗୁରୁ ବଚନ ।
ସେହିଟି ଅଟେ ନାରାୟଣ । ୯୫ ।
ଏଠାରୁ ପରେ ବ୍ରହ୍ମଜ୍ଞାନ ।
ଗୋବନ୍ଦ ହେଉ କର ଜାଣ ॥
ଇଷ୍ଟ ଦେବତା ଅଟେ ଏହି ।
ଯାକୁ ସେବିଲେ ସ୍ୱର୍ଗେ ଯାଇ ॥
ଗୋବନ୍ଦ ନନ୍ଦ ତୁ ଅପ୍ରତେ ।
କଷ୍ଟପ୍ତ କହିଲି ମୁଁ ତୋତେ ॥
କୋଟି ତପସ୍ୟାରେ ଜନମ ।
ଦୁର୍ଲଭ ଅଙ୍ଗ ହେଉ ଜାଣ ॥
ଏଠାରୁ ପରଅଛି ବୃର୍ବ ।
କଥ କରବୁ ଯୋଗ ସାଧ । ୧୦୦
ଏ ପାଦତଳେ ସର୍ବ ତୀର୍ଥ ।
ଦର୍ଶନ କଲେ ହେବୁ ମୁକ୍ତ ॥
ହେତରେ କର ତୁ ଗୋଚର ।
ଦେଖିବୁ ସପତ ସାଗର ॥
ପାଳତୁ ମୋ ବଚନ ଯେନ ।
ଏ ଅଙ୍ଗେ ପୂରଛି ମେଦନୀ ॥
ବହି ଯାଉଛି ଗଙ୍ଗାଧାର ।
ଏ ଘାଟେ ସ୍ନାହାନ ତୁ କର ॥
ଅଛି ପ୍ରତମା ଲିଙ୍ଗ ମାନ ।
ଏ ଘଟେ କର ତୁ ଦର୍ଶନ ॥

ଦେହରେ ସବୁଙ୍କୁ ଚହିବୁ ।
ନିଶ୍ଚୟ ମୁକତି ଲଭିବୁ । ୧୦୬ ।
ତୁଳସୀ କାଠ ନ ପିନ୍ଧିଲେ ।
ପଶିବୁ ଅଭୟ ବ୍ରହ୍ମରେ ॥
ତୁଳସି କଣ୍ଠି ଯାହା କହି ।
ଶୁଣ ଗୋବିନ୍ଦ ଦେଉଛୁ ଦେଇ ॥
ଶୁଷ୍କ କାଠକୁ ଗଲେ ଭରି ।
ଯତି ବେଶରେ ଦଗାମଣ୍ଡି ॥
ଜନ୍ତୁ ଯେ ଥାନ୍ତି ଶୁଷ୍କହାଡ଼ ।
ତାହା ନ ଜାଣି ମୂଢ଼ ବାଡ଼ ॥
ଜଗତେ ଆରମ୍ଭ ଦେଖାନ୍ତି ।
ପ୍ରାଣୀମାନଙ୍କୁ ଭଣ୍ଡି ଥାନ୍ତି ।୧୧୧।
ତହିଁରେ ନାହିଁ ବ୍ରହ୍ମଜ୍ଞାନ ।
ଗୋବିନ୍ଦ ଶୁଣ ସାବଧାନ ॥
ମାଳ ଜପିଲେ ମୁକ୍ତି ନାହିଁ ।
ସ୍ୱରୂପ ଅଛେ ଦେଲୁ କହି ॥
ତୁଳସୀ କଣ୍ଠି ଯେତେ ମୋର ।
ଖଣ୍ଡିଲେ ବହି ଯାଇ କ୍ଷୀର ॥
ସେ ମାଳ ଜପିଲେ ମୁକତି ।
ହେବୁ ବୈକୁଣ୍ଠେ ପରାପତି ॥
କଣ୍ଠ ପଣ୍ଡିକା କଣ୍ଠତଟେ ।
ନାମ ମିଶାଇ ଯେତେ ରଟେ ॥
କେଉଁଠି ନାମ ବ୍ରହ୍ମଟି କଣ୍ଠି ।
ନାମ ମିଶାଇ ଜପ ରଟି ।୧୧୨।
ଅରୂପ ଅନାଦି ସେ ମୂଳ ।
ଗୁନ୍ଥି ରଖିଛୁ ମାଳ ମାଳ ॥
ବାମ ଡାହାଣ ତତ୍ତ୍ୱପାଏ ।
କଣ୍ଠିର ତେଜ ଅଲୋମଏ ॥
କଣ୍ଠିକି ନ କର ଭଜନ ।
ଅଲେଖ ବ୍ରହ୍ମେ ହେବୁ ଲୀନ ॥
ସେଠାରେ ଜନ୍ମ ମୃତ୍ୟୁ ନାହିଁ ।
ଅମଡ଼ା ଅପୋଡ଼ା ସେ ଭୂଇଁ ॥
କ୍ଷୁଧା ତୃଷାହିଁ ନ ବାଧଇ ।
କାମନା କଳ୍ପଣା ନ ଥାଇ ॥
ସେହି ସ୍ଥାନକୁ କର ଧ୍ୟାନ ।
ସେ ପ୍ରଭୁ ପୂର୍ଣ୍ଣମୟ ବ୍ରହ୍ମ । ୧୨୩ ।
ସ୍ୱଜନେ ଶୁଣ ମନ ଦେଇ ।
ଶ୍ରୁତି ନିଷେଧ ଗୀତା ଏହି ॥
ଅନାଦି ଗୋବିନ୍ଦ ସମ୍ବାଦ
ପଣ୍ଡିତ ଜନେ କର ଭେଦ ॥
ଯେତେ ଅଟନ୍ତି ସୁଜ୍ଞ ସାଧୁ ।
ଛଣି ପିଅଇ ସୁଧା ମଧୁ । ୧୨୬ ।

ଯେ ଗୁରୁ ଶିଷ୍ୟ ପାଦଗତ ।
ଭଣିଲା ସ୍ୱାମି ଅରକ୍ଷିତ । ୧୬ ।
ନିଷ୍କାମସାଧୁ ଭକ୍ତଜନ ।
ଏ ନାମେ ଶୁଦ୍ଧ ଗ୍ରନ୍ଥ ଦିନ ॥

ଇତି ଶ୍ରୀ ଶ୍ରୁତିନିଷେଧଗୀତା ସୁଜନଜନହିତା ଅନାଦି ଗୋବିନ୍ଦ ସମ୍ବାଦେ ତୁଳସୀ ବୃକ୍ଷ ବାହ୍ୟମତ ଓ ଶଙ୍ଖାର୍ଥ ବର୍ଣ୍ଣନେ ମାଳା ନିଜନାମ କଣ୍ଠିଚରିତକଥନେ ନାମ ପଞ୍ଚମୋଽଧ୍ୟାୟଃ ।

---

# ଷଷ୍ଠ ଅଧ୍ୟାୟ

## ଗୋବିନ୍ଦ ଉବାଚ

ଗୋବିନ୍ଦ ଶୁଣି ଆନନ୍ଦିତ ।
ତୁଳସୀ ବୃକ୍ଷର ଚରିତ । ୧ ।
ଶ୍ରୀଗୁରୁ ପାଦତଳେ ପଡ଼ି ।
ଉଠି କପାଳେ କର ଯୋଡ଼ି ॥
ହେ ପ୍ରଭୁ ବ୍ରହ୍ମାଣ୍ଡ ଗୋସାଇଁ ।
କଥାଏ ପଚାରୁଛି ମୁହିଁ । ୩ ।
ତୁମ୍ଭେ ମୋହର ସଦଗୁରୁ ।
ଶୁଣେ ମୁଁ ଥିବ ଶ୍ରୀମୁଖରୁ । ୪ ।
ମନକୁ ସଂଶୟ ଲାଗିଲା ।
ନିର୍ମାଲ୍ୟ କଥା କାହିଁଗଲା । ୫ ।
ଏ ଧର୍ମେ କୋହିଁଲି କାହିଁକି ।
ଅଯୋଗ୍ୟ ହୋଇଲା ତହିଁକି ॥

ନିର୍ମାଲ୍ୟ ବୋଲି ପ୍ରାଣିମାନେ ।
ଭସ୍ମ ଅଛନ୍ତି ପ୍ରତିଦିନେ । ୬ ।
ଏ ଜୀବ ଉଦ୍ଧାରଣ ପାଇଁ ।
ମୁକ୍ତି ପାଇବୁ ବୋଲି ଥାଇ ॥
ଏ ପୁଣ କେବଣ ଭକ୍ଷ୍ୟ ।
କହ ହେ ଅନାଦି ପୁରୁଷ । ୭ ।
ମୋତେ ତ ସଂଶୟ ଲାଗୁଛି ।
କେମନ୍ତ ବିଧାନେ ଚଳୁଛି ॥

## ଅନାଦି ବ୍ରହ୍ମ ଉବାଚ

ଶୁଣ ଭକତ ଶୁଦ୍ଧଚେତା ।
ନିର୍ମାଲ୍ୟ ବିଧିମତ କଥା ॥

ଜାଳ କନକରେ ନାନା ଧର୍ମ ।
ତହିଁ ପୂଜନ୍ତି ସଦା ବ୍ରହ୍ମ । ୧୨ ।
ଆପଣା କର ତନ ଦାରୁ ।
ସେ ତନ ନିଷ୍ଠଧର୍ମ ମେରୁ ॥
ବେଦ ମତରେ ରଖି ତାଙ୍କୁ ।
ଲିଲାଶ କର ଯେପାରଙ୍କୁ । ୧୪ ।
ଷୋଡ଼ିଏ ପୌଷ୍ଟି ଭୋଗ ଖଞ୍ଜି ।
ଜଗତ ଜନ ମନ ରଞ୍ଜି ।୧୫।
ଭୋଳ ହୋଇଲେ ସେହି ବାଟେ
ପଡ଼ିଲେ ବିଦ୍ୟୁ ଲକ୍ଷଟେ ।୧୬।
ବେଦର ମତକୁ ଦେଖାଇ ।
ଗୁପତ ହେଲେ ମହିମାଇ ॥
ଦର୍ଶନେ ପାଇ ଭକ୍ତଜନ ।
ଖେଳନ୍ତି ଖେଳ ଦଗୁ ଜାଣ ॥
ଶୁଷ୍କ କାଠର ରୂପ ଚାହିଁ ।
ପରବ୍ରହ୍ମଙ୍କୁ ଜଣା ନାହିଁ ॥
ରୂପକୁ ଚାହିଁ ହେଲେ ଭୋଳା ।
ଦର୍ଶନେ ମନ ପୂର୍ଣ୍ଣ ହେଲା ॥
ତାହାଙ୍କ ପ୍ରିୟ ଜନ ଯେତେ ।
ପ୍ରତକ୍ଷେ ଚାହିଁଲେ ସେ କେବେ
ହେ ଜଗନ୍ନାଥ ପ୍ରଭୁ ରକ୍ଷ ।
ଯଷୋର ଗଢ଼ ପଡ଼ ମୋକ୍ଷ ॥

ଏମନ୍ତ ବୋଲି ପ୍ରଣମିତ ।
ସପତ ବାର ଦଣ୍ଡବତ । ୧୩ ।
ସ୍ନାହାନ ଦରଶନ ସାର ।
ଅଭକ୍ତା ଅନ୍ୟ ଇଛା କର ॥
ନହିଁ ଲାଗଇ ଭୋଗ ଯେତେ ।
ବାଣ୍ଟି ଯେ ଭକ୍ଷନ୍ତି ସମସ୍ତେ ॥
ଉଦର ଭର ଭୁଞ୍ଜି ସର୍ବେ ।
ତପସ୍ୟା କରିଥିଲେ ପୂର୍ବେ ॥
ଅଇଲେ ଶ୍ରୀ ପୁରୁଷୋତ୍ତମ ।
ସୁଫଳ ଆମ୍ଭର ଜନମ । ୧୭ ।
ସାତ ପୁରୁଷ ତର ଗଲେ ।
ବୈକୁଣ୍ଠ ଭୁବନେ ବସିଲେ ॥
ଏମନ୍ତ ବୋଲି ଭାବ ଭୋଳେ ।
ଭୁଞ୍ଜୁ ଅବକାଶ ବେଳେ ॥
ରୂପକୁ ଚାହିଁ ସେ ମୋହିତ ।
ନ ଜାଣି ଆତ୍ମାଭାବ ତତ୍ତ୍ୱ ॥
ବସ୍ତୁର ଅବଶିଷ୍ଟ ଖାଇ ।
ତରିବା ପଦ ଜଣା ନାହିଁ ॥
ଅନ୍ୟ ଗୁଡ଼ାକ ସେହୁ ଧନ୍ଦ ।
ଗୃହକୁ ଆସନ୍ତି ସେ ଫେରି ॥
ଯତନ କରନ୍ତି ତାଙ୍କୁ ରଖି ।
ଦହାନ ଯାହା ମୁଖେ ଭଷି । ୩୩

ନିର୍ମାଲ୍ୟ କଲୁ ଅଟମ୍ବସାର ।
ପାପ ହୁଅନ୍ତି ଗଲ୍ମ ପାର । ୪୮ ।
ଏହା ବିଗ୍ରହ ଭକ୍ତଜନ ।
ବେଦ ଅନ୍ତରେ ଉଦେ ମନ ॥
ଉଚ୍ଚରିବା ନୁହଇ ସେ କଥା ।
ବେଦର କର୍ମ କରି ବୃଥା ॥
ନିର୍ମାଲ୍ୟ ବୋଲି ଯେ ଭକ୍ଷିଲେ
ଅବର ପାଦରେ ମାଡ଼ିଲେ ॥
ଦେହରେ ବୋଳି ହୋଇ ଅନ୍ନ
ପ୍ରାପତ ହେଲା ଧର୍ମ ପୁଣ୍ୟ ॥
ବିବେକ ନ ପାରିଲେ ପାଳି ।
ଦେହେ ସର୍ବାଙ୍ଗେ ହେଲେବୋଳି
ଅମ୍ଭାର ଜ୍ଞାନ ନ ବିଗ୍ରହ ।
ହୋଇଲେ ବଡ଼ ଦ୍ରୋହକାରୀ ॥
ଚେଷ୍ଟି ତରି ନ ପାରିଲେ ।
ବିଷ୍ଣୁ ଯୋନିରେ ଜାତ ହେଲେ ।
ତାହାଙ୍କ ସେ ପଥେ ଭୁଲଇ ।
ବେଦ ନ୍ତ ମାର୍ଗରେ ଚଳାଇ ॥
ବାଳକେ ଯେସନେ ଅନ୍ନ ଖାଇ ।
ଭୋଜନେ ସ୍ବଜ୍ଞାନ ନ ଥାଇ ॥
ହସ୍ତେ ମୁଷ୍ଟି ଭରିଲେ ଉଦର ।
ଦେହେ ଲିପଇ ସର୍ବାଙ୍ଗର ॥

ସେ ନ ଜାଣଇ ଭଲ ମନ୍ଦ ।
ବିଗ୍ରହ ଅଗ୍ରହ ବିବଧ । ୪୯ ।
ପାପ ନ ପୁଣ୍ୟ ହେଉ ଅଛି ।
ବାଳୁତ ସ୍ପୃହ ନ ଜାଣନ୍ତି ॥
ସେହି ପ୍ରକାରେ ଯେତେ ଜନ ।
ବାଳୁତ ପରି ଯେ ଅଜ୍ଞାନ ॥
ନିର୍ମାଲ୍ୟ ବୋଲି ଜଣା ନାହିଁ
ମୁକତି ପାଇବ ସେ କାହିଁ ॥
ନିର୍ମାଲ୍ୟ ବୋଲି ଖାଇ ଭାତ ।
ଭକ୍ଷି ପୋଛନ୍ତି ହସ୍ତେ ମାଥ ॥
ତହିଁରେ ମୁକ୍ତି ନାହିଁ ଜାଣ ।
ସ୍ୱରୂପ ଶୁଣ ଭକ୍ତ ଜନ । ୫୦ ।
ନିର୍ମାଲ୍ୟ ବୋଲି ଜଣା ନାହିଁ ।
ନିର୍ମଳ ନାମଟି ଅଟଇ । ୫୧ ।
ତାକୁ ନିର୍ମାଲ୍ୟ ବୋଲି କହି ।
ଭକ୍ଷି ପାରିଲେ ମୁକ୍ତି ପାଇ ॥
ନାମ ନିର୍ମାଲ୍ୟ ବୋଲି ଜାଣ ।
କଣ୍ଠେ ହୋଇଛି ଅଷ୍ଟଦନ ॥
କଣ୍ଠରୁ ନ ଯାଏ ତଳକୁ ।
ନିର୍ମାଲ୍ୟ ବୋଲି ଦିନା ତାକୁ ॥
ଏହି ନିର୍ମାଲ୍ୟ ଯେହୁ ପାଇ ।
ନିର୍ଗୁଣ ଭକ୍ତ ବୋଲି କହି ॥

ତେଣେ ଲଭଇ ସିନା ଭକ୍ତି ।
ନ ପଡ଼େ ଦୁରତ ଦୁର୍ଗତି ॥
ବୈକୁଣ୍ଠ ଭୁବନେ ତା ବାସ ।
ତାକୁଟ କହ ନିଜ ଦାସ । ୫୭ ।
ଆଉ ଯେତେକ ଚିହ୍ନ କଥା ।
ବେଦର ତୁଳନା ସର୍ବଥା ୫୮ ।
ଏ ଯେବେ ପ୍ରମାଦ ପାଇଲେ ।
ଖପ୍ପରେ କମ୍ପାଇ ପଡ଼ିଲେ ॥
ଅବର ନର୍କ କୁଣ୍ଡେ ପଡ଼ି ।
ଜନମ ମୃତ୍ୟୁହିଁ ନ ଛାଡ଼ି । ୬୦ ।
ଚଉଦ ବ୍ରହ୍ମାଣ୍ଡ ଚଳିଛି ।
ଯମର ଅଧିକାର ଅଛି । ୬୧ ।
ଜାଣିଲୁ ବସ୍ତୁ ନଷ୍ଟକୁଟ ।
ତେଣୁ ତାହାକୁ ଦେଲୁ କାଟି ॥
ନିର୍ମାଲ୍ୟ ମୁକ୍ତି ନାହିଁ ବୋଲି ।
ତେଣୁ ଭକ୍ତଙ୍କୁ ମନା କଲି ॥
ଭକ୍ଷିବ ଯେବେ ଭୋଗ ରାଗ ।
ହୋଇବ ଯୋଗୀ ଗଣ ଭାବ ॥
ନାମ ବ୍ରହ୍ମକୁ ଆଶ୍ରେ କର ।
ସଂସାରୁ ହୋଇ ଯିବ ପାର ॥
ଜଗନ୍ନାଥଙ୍କୁ ଜନ୍ମ କଲି ।
ମାନବ ଅବତାର ହେଲି ॥
ତେଣୁ କାଟିଲି ନୀଳଗିରି ।
ଆମ୍ଭର ଆଜ୍ଞା ନ ଅଟଇ ॥
ଏ ବୋଲ ନ ବୁଝି ପାମର ।
ବେଦ ବାକ୍ୟକୁ କର ପାର ॥
ଏଥରୁ ନାହିଁ ନା ଅଗମ୍ୟ ।
ତଥ୍ୟ ମଣିଛନ୍ତି ବେଦକୁ ।୬୯।
ଶୁଣିଲୁଟି ତ ହୋ ଭଗତ ।
ନିର୍ମାଲ୍ୟ ବିଧାନ ଚରିତ । ୭୦ ।

## ଗୋବିନ୍ଦ ଉବାଚ

ଶୁଣି ଗୋବିନ୍ଦ ତୋଷମନ ।
ନମିଲେ ଶ୍ରୀଗୁରୁ ଚରଣ । ୭୧ ।
ହେ ପ୍ରଭୁ ଯାହା ଆଜ୍ଞା ଦେଲ ।
ଶୁଣି ମନରେ ପ୍ରତେ ଗଲ ।୭୨
ଆବର ଦଶମ ବିଧାନ ।
ସ୍ୱରୂପ କହ ଶୂନ୍ୟ ବ୍ରହ୍ମ ।୭୩।
ଦଶମୀ କର୍ମ ବୋଲାଇଲ ।
ଏ ଧର୍ମେ କିମ୍ପା କାଟଗଲ ।୭୪
କେତେ ତହିଁରେ ପାପ ପୁଣ୍ୟ ।
କେତେକ ସଗୁଣ ନିର୍ଗୁଣ ॥
ଏହାର ଫଳ ଶ୍ରୁତି କେତେ ।
ସେହି କହିବା ଅବଧୂତେ ॥

ସ୍ୱରୂପ ଶୁଣିଥିବ ମୁହିଁ ।
ଶ୍ରୁତିନିଷେଧ କହ ଫେର ।୭୭।

### ଅନାଦିବ୍ରହ୍ମ ଉବାଚ

ଶୁଣ ଗୋବିନ୍ଦ ସାଧୁ ଧୀର ।
ଦଶମୀ କର୍ମର ବିସ୍ତର । ୭୮ ।
ଅନ୍ନ ଗୁଡ଼ାଏ ପକ୍କର ।
ତୁଳସୀ ପତ୍ର କଟେଇ ଧର ।୭୯।
ଅନ୍ନ ବ୍ୟଞ୍ଜନକୁ ସେ ଆଣି ।
ଛିଡ଼ାଇ ଦିଅନ୍ତୁ ସେ ପାଣି ।୮୦।
ଭୋଜନ କର ପେଟ ଭରି ।
ଦଶମୀ ପାଳଣ ଆଚରି । ୮୧ ।
ଦଶମି କଲେ ବଡ଼ ଦୋଷ ।
କ୍ରିୟା କର୍ମରେ ଏ ଉଦ୍ଦେଶ ।୮୨।
ତହିଁରେ ନାହିଁ ଗତି ମୁକ୍ତି ।
ଏକା ଅଚ୍ଛନ୍ନ ଫଳ ତୃପ୍ତି ।୮୩।
ତାହାର ବିଧିମତଫଳ ।
ନାହିଁ ରହଇ ସର୍ବକାଳ ।୮୪।
କ୍ରିୟା ଯେ କର୍ମମାନ କର ।
ବାଦ୍ୟ ଅନ୍ତରେ ଅଧିକାଶ ।୮୫।
ତହିଁରେ ମୁକ୍ତି ନାହିଁ ଜାଣ ।
ସବୁ ଏ କର୍ମର ବିଧାନ । ୮୬ ।

ଶୁଣିଲୁଟିଙ୍କ ଏ ଉକତ ।
ଦଶମୀ ପାଳଣାର ବ୍ରତ । ୮୭ ।
ଦଶମୀ ବୋଲି ଯାହା କହି ।
ଦଶାଙ୍ଗ ଯୋଗ ସେ ଅଟଇ ॥
ବ୍ରହ୍ମକୁ ପାଇଲେ ସମ୍ବାଦ ।
ଏ ଜନ ଦେହେ ହୋଏ ସିଦ୍ଧି ॥
ଦଧିବାବନ ଅବତାର ।
ଶ୍ରୀରାମଚନ୍ଦ୍ର ରୂପ ସାର । ୯୦ ।
ଶ୍ରୀକୃଷ୍ଣ ରୂପ ଅବତାର ।
ନୃସିଂହ ପର୍ଶୁରାମ ବୀର । ୯୧ ।
ମତ୍ସ୍ୟ କଚ୍ଛପ ରୂପ ଧରୁ ।
ଚଉଦ ରୂପ ଅବତର । ୯୨ ।
ଶ୍ରୀ ଜଗନ୍ନାଥ ଅବତାର ।
ହୋଇ ପାରଲେ ଯେ ଶରୀର ॥
ଏ ଦଶ ଅବତାର ହୋଇ ।
ଦଶମୀ ବ୍ରତ ବୋଲି କହି ।୯୪।
ଦଶ ରୂପଙ୍କ ଦଶ କର୍ମ ।
ତେବେ ସାଯୁଜ୍ୟ ଶୁଣ ଧର୍ମ ॥
ଦଶମୀ ବ୍ରତ କରେ ପ୍ରାଣୀ ।
ଦଶମୀ ଯୋଗକୁ ନ ଜାଣି ॥
ଦଶଇନ୍ଦ୍ରିୟ ଦଶ ଦିଗ ।
ପ୍ରକୃତିଗଣେ ହୋନ୍ତି ଭୋଗ ॥

ଯାକୁ ପାଳିଲେ ସିଦ୍ଧି ହୋଇ । | ସ୍ୱଜନେ ଶୁଣ କର୍ଣ୍ଣପୁଟେ ।
ଦଶମୀ ବ୍ରତ ବୋଲି କହି ।୯୮। | ଭ୍ରମି ନ ମର ମାୟାକୂଟେ ॥
ଯେ ପ୍ରାଣୀ ଯେତେ ଗୁଣ ବୁଝେ | ଶ୍ରୁତିନିଷେଧ ଗୀତା ଏହି ।
କର୍ମ ଦଶମୀ ମନ ପୂଜେ । ୯୯ । | କର୍ଣ୍ଣେ ଶୁଣିଲେ ତତ୍ତ୍ୱ ପାଇ ॥
ଶରୀରେ ଠାବ କର ସବୁ । | ବୈକୁଣ୍ଠପୁରେ ହୋଏ ବାସ ।
ଦଶାଙ୍ଗ ଯୋଗପରେ ପ୍ରଭୁ ॥ | ଅରୂପ ବ୍ରହ୍ମରୂପ ଦୃଶ୍ୟ ।୧୦୭
ଗୋବିନ୍ଦ ଏ ଦଶମୀ କର । | ମିଥ୍ୟା ନୁହଇ ସତ୍ୟ କଥା ।
ସଂସାରେ ଭ୍ରମି ଭୁ ନ ମର ॥ | ସ୍ୱଜନେ ଶୁଣି ହୁଅ ଚେତା ॥
ଏମାନ ବେଗଳ କର୍ମରୁ । | ସାଭୁକ୍ୟ ଧର୍ମ ଅଟେ ଏହି ।
ଏଥି ପ୍ରସନ୍ନ ନାହିଁ ସ୍ୱରୁ ॥ | ସତ୍ୟ ବଚନ ମିଥ୍ୟା ନୋହି ॥
ଏମାନ ଅଟେ ପଥଶ୍ରମ । | ହମର ଶ୍ରୀଗୁରୁ ଅଲେଖ ।
ଏଣେ ନ ଖଣ୍ଡେ ଭବଭ୍ରମ ॥ | ଗୀତାରେ ଭଣେ ଭୀମ ମୂର୍ଖ ॥

ଇତି ଶ୍ରୀ ଶ୍ରୁତିନିଷେଧଗୀତା ସୁଜନଜନହନ୍ତା ଅନାଦି ଗୋବିନ୍ଦ ସମ୍ବାଦେ ନିତ୍ୟ ନିର୍ମାଲ୍ୟ ଚରିତ କଥନେ ଦଶମୀ ପାଳଣା ତତ୍ତ୍ୱ ବିସ୍ତରଣେ ନାମ ଷଷ୍ଠ ଅଧ୍ୟାୟ ।

---

## ସପ୍ତମ ଅଧ୍ୟାୟ ।

### ଗୋବିନ୍ଦ ଉବାଚ ।

ଗୋବିନ୍ଦ ମାଥେ ଦେଇ ହସ୍ତ । | ତୁମ୍ଭେ ମୋ ଗତି ପତି ଦାତା ।
ହେ ସ୍ୱାମି ଗୁରୁ ଅବଧୂତ । ୧ । | ଏ ପିଣ୍ଡ ହରତା କରତା । ୨ ।

ଗୁରୁଙ୍କ ସର୍ବଠାରୁ ସାର ।
ଅଶେଷ ବ୍ରହ୍ମାଣ୍ଡ ଠାକୁର । ୩ ।
ଛପନ କୋଟି ଜୀବ ଯେତେ ।
ଧର ବ୍ରହ୍ମାଣ୍ଡ ବାମ ହସ୍ତେ । ୩
ଗୁରୁ ସେ ବ୍ରହ୍ମାଣ୍ଡ ଧାରଣ ।
ସକଳ ଜୀବର କାରଣ । ୫ ।
ଗୁରୁ ବେନକେ ଅନ୍ୟ ନାହିଁ ।
ଭକ୍ତଲେ ମୁକ୍ତି ପଦ ପାଇ । ୬ ।
ଗୁରୁ ପସାରେ ଅଧିପତି ।
ଅଶେଷ ଜୀବ ମୋକ୍ଷ ଗତି ॥
କଥା ଏ ପର୍ମ୍ଭବ ଏବେ ।
ଶ୍ରୀମୁଖେ ଅଜ୍ଞା ଦେବ ଯେବେ ॥
ଯେ ଏକାଦଶୀ ବ୍ରତ ବାର ।
ସକଳ ଗତି ମଧ୍ୟେ ସାର । ୯ ।
କହ୍ମାଇ ଏତେ କୃତ୍ୟ ହେଲ୍ଲ ।
ଏ ଧର୍ମେ କହ୍ମା କାଠଗଲ୍ଲ ।୧୦।
ଏକାଦଶୀଙ୍କ ଯାହା କହ୍ଣ ।
ସର୍ବ କର୍ମରେ ସାର ସେହ୍ଣ ।୧୧।
ଏ କଥା ବଡ଼ ଅଗୋଚର ।
ଭୋ ସ୍ୱାମୀ କହ ଅଣ କାର ॥
ଏହ୍ଣ ବ୍ରତକୁ କଶ ମୂଳ ।
ଏ ଧର୍ମ ପ୍ରବୃର ସକଳ । ୧୩ ।

ଏ କାଠଗଲ୍ଲ ଯେନ୍ତେ ହନୁ ।
ସଂଶୟ ନ ଯାଉଛି ମନୁ । ୧୪ ।
ଭୋ ପ୍ରଭୁ ଅରୂପ ଅଦେହ ।
ନିର୍ଣ୍ଣୟ କର ମୋତେ କହ ।୧୫

ଅନାଦିବ୍ରହ୍ମ ଉବାଚ

ଶୁଣ ଭକତ ପୁତ୍ର ଚେତା ।
ଯେ ଏକାଦଶୀ ବ୍ରତ କଥା ॥
ନିର୍ମଳ କର୍ମ ସେ ଅଟଇ ।
ଦିବସେ ଉପବାସ ଥାଇ ।୧୬।
ସନ୍ଧ୍ୟାରେ ଛେନା ପଣା କର ।
ଭୋଗ ପାଅନ୍ତି ତାଳ ମାର ।୧୮
କ୍ଷୁଧାରେ ଅମ୍ଭାଙ୍କ ଅଦୃଶ୍ୟ ।
ନଷ୍ଟିକେ କରନ୍ତି ସେ ଗ୍ରାସ ॥
ତହିଁ ନୁହଇ କିଛି ଫଳ ।
ଅମ୍ଭାଙ୍କ ହୁଅଇ ବିକଳ । ୨୦ ।
ପଞ୍ଚଭୂତକୁ ଦୁଃଖ ଦ୍ୟନ୍ତି ।
କାୟାକୁ ଦଗଧ କରନ୍ତି ।୨୧।
ଯହିଁରେ ଅମ୍ଭା ଦୁଖ ଲଭ ।
ନ ଥାଇ ଜ୍ଞାନ ମାର୍ଗ ଭାବ ।୨୨।
ଅମ୍ଭା ସୁଖରେ ଦିନା ପୂର୍ଣ୍ଣ୍ୟ ।
ଯସାରୁ ହୁଏ ଉଦ୍ଧାରଣ । ୨୩।

ଯେସନେ ସାନ୍ଧୁ ଧନ ପାଇ ।
ଖାଡକ ଅଗୁଲ ରଦ୍ଧଇ । ୨୪ ।
ସେ ରୂପେ ଏକାଦଶୀ ବ୍ରତ ।
ଶୁଣ ଗୋବନ୍ଦ ଦେଇ ଚିତ୍ତ ॥
ମୋର ବଚନ ଦୃଢ଼େ ଧର ।
ବାଛ ଏକାଦଶୀ ବ୍ରତ୍ତର ।୨୬।
ତହିଁରେ କିଛୁ ନାହିଁ ଧର୍ମ ।
ତହିଁ ପ୍ରସନ୍ନ ନୋହେ ବ୍ରହ୍ମ ॥
ଏକାଦଶୀ ବ୍ରତ ଯେ ଅଟଇ ।
ଏକା ଅକ୍ଷର ବୋଲି କହ ॥
ଏ ବ୍ରତ ମଧ୍ୟେ ତୁ ବନ୍ଧର ।
ଜନ୍ମ ମରଣ ହେବୁ ପାର ।୨୯।
ଏକା ଅକ୍ଷର ଭଜ ଚିତ୍ତେ ।
ଏକାଦଶୀ ଯେ କର ନିତ୍ୟେ ।
ଜାତି ଅଜାତି ନ ବାଛିବୁ ।
ସକଳ ଗୃହେ ତୁ ଭୁଞ୍ଜିବୁ ।
ମାଛ ମାଉଁସ ଭାତ କାଞ୍ଜି ।
ଯା ଗୃହେ ପ୍ରଭୁ ଦେବେ ଖଞ୍ଜି ।
ଖଣ୍ଡ ସାକର ଦୁଧ ଦହି ।
ବାସୀ ଟବତ ସର୍ବ ଖାଇ ।୩୩।
ବାଅନ ପାଠକ ଜାତିରେ ।
ବିକାର ନ ଧର ମନରେ ।୩୪।

ଅତ ନର୍ବିକାରେ ଭୁଞ୍ଜଇ ।
ନିର୍ବେଦ ପର ଧର୍ମ ଏହି । ୩୫ ।
ଯହିଁ ସେ ଏକା କର୍ମ ହେଲା ।
ଏକାଦଶୀଟି ବୋଲାଇଲା ॥
ଏହାକୁ ଏକାଦଶୀ କହ ।
ଏମାର୍ଗେ ଗମି ମୋତେ ପାଇ ॥
କାହିଁ ତୁ ନ କର ବିକାର ।
ଏକଇ କର୍ମରେ ବନ୍ଧର । ୩୮ ।
ମନରେ ଧର ତୁହି ହିଂସା ।
ଭଜନେ ନ ପାଇବୁ ଆଶା ॥
ସଧୀରେ ରଞ୍ଜିଥିବୁ ମନ ।
ତେବେ ପାଇବୁ ବ୍ରହ୍ମ ଚିହ୍ନ ॥
ବ୍ରାହ୍ମ୍ୟ ମତର କର୍ମ ଯେହୁ ।
କଲେହେଁ କିଛୁ ଫଳ ନାହିଁ ॥
ଏକାଙ୍ଗ କର ଯେ ପାରିଲା ।
ସେ ପ୍ରାଣୀ ବ୍ରହ୍ମକୁ ପାଇଲା ॥
ଜନ୍ମ ମରଣୁ ହୋଏ ପାର ।
ନିର୍ବେଦ କର୍ମ ଚରାଚର ॥
ସ୍ୱରୂପ ଶୁଣିଲୁ ତ୍ଵରିତ ।
ଏକାଦଶୀର ବିଧିମତ । ୪୪ ।
ବାହ୍ୟରେ କର୍ମ ନ କରିବୁ ।
ଗୁରୁ ବଚନ ପାଳିଥିବୁ । ୪୫ ।

ଶାହାସ୍ତ୍ରେ ନୋହିବ ଭୁ ବଣା ।
ଶ୍ରୀମୁଖେ ଶୁଣିଅଛୁ ଢ ନା ।
ନାସ୍ତିପୃ ବଚନନ୍ତ ଏହି ।
ଯେଡ଼ ମୁଁ ତୋତେ ଦେଲି କହି
ଗୁରୁ ଦ୍ରୋହରୁ ନାହିଁ ପାପ ।
ଲଭି ସେ ଥାଇ କୋଟି କଳ୍ପ ॥
ସ୍ୱର୍ଗେ ପାତାଳେ ନାହିଁ ସ୍ଥାନ ।
ଜୀବନ୍ତେ ଲଭେ ସେ ମରଣ ॥
ତାହାର ଗତି ମୁକ୍ତି ନାହିଁ ।
ଏ ତତ୍ତ୍ୱ କହିଲୁ ବୁଝାଇ ।୫୦।
ପର ହିଂସ୍ରକ ଯେଉଁ ଜନ ।
ତାହାଙ୍କୁ ନ କହ ଏ ମାନ ॥
ଭଗବତ୍ ଭକ୍ତମାନଙ୍କୁ ।
ଏ ବାକ୍ୟ ଅଗମ୍ୟ ତାହାଙ୍କୁ ॥
ହୃଦରେ କପଟ ରଖିଣ ।
ଯେ ପ୍ରାଣୀ କହନ୍ତି ବଚନ ॥
ପର ରମଣୀ ଯେହୁ ହର ।
ଯେ ଧନ ଦ୍ୟନ୍ତି ଚୋର କର ॥
ସଭାରେ ବସି ଯେଉଁ ଜନ ।
ମିଛ ଯେ କହନ୍ତି ବଚନ ।୫୫।
ଏ ସର୍ବେ ଅମେଧ ଶରୀର ।
ନରକେ ନିବାସ ତାଙ୍କର ॥

ଶୁଣ ଗୋବିନ୍ଦ ମନ ଦେଇ ।
ଏହାଙ୍କୁ ଗୁପ୍ତ ଯେ ଅଟଇ ।୫୭।
ମାତୁଆ ଚିହ୍ନୁଆଙ୍କ ଗତି ।
କେବେହେଁ ନୋହେ ଶୁଦ୍ଧମତି
ମାଉସୀ ପିଉସୀ ହରଣ ।
ଏ ମାନେ ପଶୁବୋଲି ଜାଣ ॥
ନାମରେ ଯାର ଶ୍ରଦ୍ଧା ନାହିଁ ।
ଅସୁର ବୋଲି ଅଟେ ସେହି ॥
ଅଲେଖ ପ୍ରଭୁଙ୍କୁ ଶରଣ ।
ଯେ ଜନ ନ ପଶେ ଶରଣ ॥
ତାହାଙ୍କ ଗତି ମୁକ୍ତି ନାହିଁ ।
ଶୁଣ ଗୋବିନ୍ଦ ମନ ଦେଇ ॥
ନିଷ୍କାମ ପଦେ ଯାର ମନ ।
ସେ ଭକ୍ତ ମୋହର ସମାନ ॥
ବ୍ରାହ୍ମ ପ୍ରହରେ ଯାଇ ପୁଣ ।
ମୋ ନାମ ଜପଇ ହୃଦେଣ ॥
ପ୍ରଭାତ ସମୟରେ ଯାଇ ।
ସ୍ନାନ ଶଉଚ ମାନ ହୋଇ ॥
ମୁଖରେ ଶାସ୍ତ୍ରେ ବଖାଣ ।
ପ୍ରଭୁଙ୍କୁ ମାଗଇ ଶରଣ । ୬୬ ।
ପିଣ୍ଡ ପ୍ରାଣକୁ ଦାନ ଦେଇ ।
ଧନ ପୁତ୍ରାଦି ସମର୍ପଇ । ୬୭ ।

ହେ ଗୁରୁ ଶାନ୍ତି କର ମୋତେ ।
ସଂଶୟ ନ ରହୁ ମୋ ଚିତ୍ତେ ।।
ଅନାଦି ପ୍ରଭୁ ରକ୍ଷାକର ।
ମୁଁ ଅଟେ ପାପୀ ଦୁରାଚାର ।।
କୋଟି ବୈକୁଣ୍ଠ ପ୍ରଭୁଠାରେ ।
ଶରଣ ଗଲି ତୋ ପଦ୍ମରେ ।।
ଏମନ୍ତେ କରପତ୍ର ଯୋଡ଼ି ।
ଶ୍ରୀଗୁରୁଙ୍କ ପାଦତଳେ ପଡ଼ି । ୭୧ ।
ହେ ଦଶ ଦିଗପାଳ ସାକ୍ଷି ।
ଶରଣ ଗଲି ମୁଁ ନିରେଖି ।।
ଏମନ୍ତ ବୋଲି ଯେଉଁ ଭକ୍ତ ।
ଭକ୍ତି ମୁକ୍ତି ତା ସମାପତ । ୭୩ ।
ଅମଳ ପୁରେ ଦେଲ ଚିତ୍ତ ।
କହଇ ଦ୍ରାମ ଅଚ୍ୟୁତ । ୭୪ ।

ଇତି ଶ୍ରୀ ଶ୍ରୁତିନିଷେଧଗୀତା ସୁଜନଜନହିତା ଅନାଦି ଗୋବିନ୍ଦ
ସମ୍ବାଦେ ବର୍ଣ୍ଣିଧର୍ମକଥନେ ଗୁରୁବାକ୍ୟପ୍ରତିପ ଲକ୍ଷନ
ନାମ ସପ୍ତମ ଅଧ୍ୟାୟ ।




କଟକ ପ୍ରାଚୀ ଯନ୍ତ୍ରାଳୟରେ ଶ୍ରୀ ବଳଭଦ୍ର ଚରଣ ପଟ୍ଟନାୟକ ବି, ଏ, ଙ୍କ ଦ୍ୱାରା ମୁଦ୍ରିତ ।

# ପ୍ରାଚୀ ସମିତିରୁ ପ୍ରକାଶିତ

## ଅନ୍ୟ କେତେକ ପୁସ୍ତକ—

| | | | |
|---|---|---|---|
| ୧ | ବଟୁଗର୍ଭ ପୁରାଣ | | ଟ ୧ ୫ |
| ୨ | ଗୁପ୍ତଚିନ୍ତାମଣି | | ଟ ୦ ୷ |
| ୩ | ନିର୍ଗୁଣମାହାତ୍ମ୍ୟ | | ଟ ୦ ୷ |
| ୪ | ବ୍ରହ୍ମଶଙ୍କୋଳି ଓ ଅଣାକାର ସଂହିତା | | ଟ ୦ ୫ |
| ୫ | ବ୍ରହ୍ମନିରୂପଣ ଗୀତା | | ଟ ୦ ୷ |
| ୬ | ଶ୍ରୀମଦ୍ଭୋଇଙ୍କ ଭଜନମାଳା | ୧ମ | ଟ ୦ ।୵ |
| ୭ | ,, | ୨ୟ | ଟ ୦ । |
| ୮ | ଘଟରେ ଗୀତା | | ଟ ୦ ୫ |
| ୯ | ଗୁରୁଭକ୍ତି ଗୀତା | ୧ମ | ଟ ୧ ୫ |
| ୧୦ | ,, | ୨ୟ | ଟ ୦ ୫ |
| ୧୧ | ପ୍ରେମଭକ୍ତି ବ୍ରହ୍ମ ଗୀତା | | ଟ ୦ । |

ଏକମାତ୍ର ପ୍ରାପ୍ତିସ୍ଥାନ :—

**ପ୍ରାଚୀ ବୁକ୍ ଷ୍ଟଲ୍**

ଗଡ଼ଗଡ଼ଘାଟ

ପୋ: ଅ: ଚାନ୍ଦନୀଚଉକ, କଟକ ।